ଇତରଙ୍କ ଇତିବୃତ୍ତ

ଲେଖକ :
ଅଚ୍ୟୁତାନନ୍ଦ ପତି

ପ୍ରକାଶକ :
ପ୍ରଗତି
ସନ୍ଥମାଧବ
ଯାଜପୁର-୭୫୫୦୦୧

ମୁଦ୍ରଣ :
ଜି.ଜି. ଗ୍ରାଫିକ୍ସ
ବଡ଼ବଜାର
ଯାଜପୁର - ୧

ମୂଲ୍ୟ :
ଟ. ୬୦/-

ପ୍ରଥମ ପ୍ରକାଶ :
ସ୍ୱାଧୀନତା ଦିବସ - ୨୦୦୬





**ITARANKA ITIBRUTA**

Author :
Achyutananda Pati

Published by :
PRAGATI
Santhamadhab
Jajpur - 755001

Printed at :
G.G.Grahics
Badabajar, Jajpur - 1

Price : Rs. 60/-

First Edition
Swadhinata Divas - 2006

# ସୂଚୀପତ୍ର

# ଶେଷରେ

ସେ ସେଦିନ ବି ଫେରିଲା । ଖାଲି ଫେରିଲା ନାହିଁ, ଆଜିକାଲି ତାକୁ ଖାଲି ଫେରିବାକୁ ହୁଏନି । ମାଲିକର ବାରିପଟ ଦରଜା ମୁହଁରେ ସେ ଦିନ୍ ଦିନ୍ ଯାଇଁ ଘଣ୍ଟା ଘଣ୍ଟା ପଡ଼ିରହେ । ଯିଏ କବାଟ ଖୋଲି ବାହାରିଛି, ତାକୁ ଚାହିଁ ବିକଳରେ କେଁ କେଁ ହେଇ ଅଳି କରିଛି । କେହି ଟିକିଏ ଚାହେଁନି । ବାଟରେ ଶୋଇଛି- ରୋଗା କୁକୁରଟା –ଛୁଆପିଲା ଘର- ଯିଏ ଆସିଲା ହାତରେ ଯାହା ପଡୁ ଦୁଇଚାରି ପାହାର ପକାଏ । ପ୍ରଥମ ପାହାରବେଳେ ଆଗ ପରି ସେ ଦୌଡ଼ି ପଳାଇ ଯାଇ ପାରୁନି । ସେତେବେଳେ ତା ଦେହରେ ତାକତ ଥିଲା । ବଡ଼ ବଡ଼ ଦନ୍ତା ମାଙ୍କଡ଼ଗୁଡ଼ାକୁ ଗୋଟାଏ ଡିଆଁରେ ଗଛ ଉପରୁ ଟାଣିଆଣି ତଣ୍ଟି କଣା କରି ପକାଇ ଦେଉଥିଲା । ମାଲିକର ଛାତି ସେତେବେଳେଫୁଲି ଉଠୁଥିଲା । ପାଖକୁ ଡାକିନେଇ ପିଠି ଥାପୁଡ଼ାଇ ମାଲିକ ଆହୁରି ମିଛ ସତରେ କେତେ ନା କେତେ ତା'ର ବାହାଦୂରି ବକି ପକାଉଥିଲା । ମାଲିକର ହାତ ଥାପୁଡ଼ା, ହସ, ଗପରୁ ସେ ଅନୁଭବ କରୁଥିଲା, ତାରି କଥା ମାଲିକ ନିଶ୍ଚୟ କହୁଛି । ଲାଙ୍ଗୁଡ଼ ହଲାଇ ହଲାଇ ଦରମଲା ଦନ୍ତାକୁ ଚାହିଁ ସେ ବି ଗର୍ବରେ ବେକମୂଳ ଫୁଲେଇ ଦେଉଥିଲା । ବେଳେ ବେଳେ ଯେଉଁ ମାଙ୍କଡ଼ଟା ଅଧାଖଣ୍ଡିଆ ହୋଇ ତଳେ ପଡ଼ି ତାକୁ ଦେଖି ଦାନ୍ତ କଡ଼ମଡ଼ କରେ, ସମସ୍ତଙ୍କ ଆଗରେ ସେ ପୁଣି ତା ଉପରକୁ କୁଦିପଡ଼ି, ଦିଚାରିଥର ଝୁଣିଦେ, ରକ୍ତ ସାଲୁବାଲୁ ହେଇ ଫେରି ଆସୁଥିଲା । ତାକୁ ସହାନୁଭୂତି ଦେଖାଇ ମାଙ୍କଡ଼ ଉପରେ ଦିଚାରି ଠେଙ୍ଗା ପଡୁଥିଲା । ଗାଁକୁ ମାଙ୍କଡ଼ ପଲ ପଶିଲେ ତ 'ଭାଲୁ ଭାଲୁ' ଚାରିଆଡୁ ଡକରା ପଡ଼ିଯାଏ । ତା ନାଁ ଶୁଣି ମାଙ୍କଡ଼ ଭୟରେ ଗାଁ ଛାଡ଼ି ଦେଉଥିଲେ । ଗାଁରେ କା'ର ବାହା ନିମନ୍ତ ହେଲା ତ ଅଇଁଠା ପତର ପ୍ରଥମେ ତା ଭାଗରେ ପଡୁଥିଲା । ଅନ୍ୟ ଗାଁରେ ଯଦି କାହା ଘରେ ପଶିଯା, ତୋରାଣି ଆଟିକା କି କାହା ଢିଙ୍କିଶାଳରେ ଚାଉଳ ଟୋକେଇରେ ମୁହଁ ମାରିଛି, ଆଉ ସେଥିଲାଗି କିଏ ପାହାର ଉଠେଇଛି ଜାଣିଲା ତ ସେ ବିଜୁଳି ପରି ଛୁଟିଯାଉଥିଲା । ତାକୁ ଚେଷ୍ଟାକରି କେହି କେବେ ପିଟି ପାରୁନଥିଲା । ଆଜି ସିଏ ସେଇ ଭାଲୁ, ମାଲିକିଆଣୀର ପ୍ରଥମ ପାହାର ପରେ ବି ଉଠି ପାରିଲାନି । ଦ୍ୱିତୀୟ ତୃତୀୟ ବସିଗଲା । ପଞ୍ଚମ ବେଳକୁ ଅତି କଷ୍ଟରେ ସେ ଦଶହାତ ଘୁଷୁରି ଘୁଷୁରି ଯାଇଁ ସିଙ୍କୁ ବାଡ଼ରେ ଗଳୁ ଗଳୁ ପଛଗୋଡ଼ ଅଟକିଗଲା । ସେ ଛନ୍ଦି ହୋଇ ପଡ଼ିଲା । ଏଇମିତି କେତେ ବାଡ଼କୁ ସେ ଏକା ଡିଆଁରେ କୁଦି ପଡ଼ିଛି । ଦମେ କେଁ କେଁ ହେଲା । ମାଲିକିଆଣୀ ପାଟିକରି

ଢାଏକିନା କବାଟ କିଳିଦେଲା– "ରୋଗା ବଦମାସ୍, ଏଠି ଦିନ୍ ଦିନ୍ ଆସି ବାଟରେ ଶୋଉଛି, କାଲି ଆ ମୁଁ ଠିକ୍ କରିଦେଉଛି।"

ସେ ବାଡ଼ ସନ୍ଧିରୁ ଟିକିଏ ଦମ୍ ନେଇ ନିଜକୁ ଟାଣି ନେଇଗଲା। ଆଗରେ ନଡ଼ିଆଗଛ ଦେହରେ ମୁଣ୍ଡଟା ପିଟି ହେଇଗଲା। ସେ ଗଡ଼ି ପଡ଼ିଲା। ଓଠ ଫାଟି ରକତ ବୋହିଆସିଲା। ଧକେଇ ଧକେଇ ସେ ପାଟି କଡ଼ରୁ ରକତ ଚାଟିନେଲା। ତାର ଆଗ ଗୋଲଗାଲ ଚେହେରା ଆଉ ନାହିଁ। ପିଠି ଉପରୁ ସବୁ ରୁମ ଉପୁଡ଼ି ଗଲାଣି। ଅଣ୍ଟା ହାଡ଼ ଉପରେ ଦିଟା ଗାତୁଆ ଘାଆ ହୋଇଛି। କଚଡ଼ା ଖାଇ ସେଠୁ ବେଶୀ ବେଶୀ ରକତ ଝରିଲା। ପାଖ ଡିମ୍ବିରି ଗଛରୁ ଡାମରା କୁଆଟେ ଉଡ଼ିଆସି ଘାରେ ଥଣ୍ଟ ହାଣିଦେଲା। କି କଷ୍ଟ– ସେ କେଁ କେଁ ହେଇ ଉଠିଲା, କୁଆଟା ଉଡ଼ିଗଲା। ପୁଣି ଆସି ଥଣ୍ଟ ଢୁକେଇଲା। ଏଥର ସେ କଷ୍ଟରେ ପଛଗୋଡ଼ ମାଡ଼ିବସି ଉଠି ପଡ଼ିଲା। ଏଇ କୁଆ ଭୁଲରେ ତା ଉପର ଦେଇ କେବେ ଉଡ଼ିଯାଇଛି ତ ସେ ଚାରିହାତ ଲେଖାଁ ଉପରକୁ ଡିଆଁ ମାରି ତାକୁ ଧରିବାକୁ ଯାଉଥିଲା। ସେ ଆଉ ବସି ପାରିଲା ନାହିଁ। ପୁଣି ପଡ଼ିଗଲା। ଆଖିର ମଝିଯାଏଁ ବହଳିଆ ଲେଞ୍ଜରା ମାଡ଼ି ଆସିଛି। ଡୋଳାରେ ସେ ଲେଞ୍ଜରାକୁ ଠେଲି ଚାରି ଆଡ଼କୁ ଦେଖିନେଲା। କୁଆଟା ପଳାଇ ଯାଇଛି। ସେ ଆଖି ମୁଦିଲା। ପିମ୍ପୁଡ଼ିଧାର ଘାଆର ଶୁଖିଲା ରକତକୁ ଖଣ୍ଡ ଖଣ୍ଡ କାଢ଼ି ଯା ମୁହଁରୁ ତା ମୁହଁକୁ ବଢ଼ାଇବାରେ ଲାଗିଲେ। ସେ ଉଠି ପଡ଼ିଲା, ଧଡ଼ ପଶିଯାଉଛି। ନଡ଼ିଆଗଛ ଚେରରେ ଢିରା ଦେଇ ସେ ଠିଆ ହେଲା। ପାଟିରୁ ତାର ଟପ ଟପ ନାଳ ଗଡ଼ି ପଡ଼ିଲା।

ଏଇ ଭାଲୁ ତା ମାଲିକ ଲାଗି, ଗାଁବାଲା ଲାଗି କ'ଣ ନ କରିଛି ? ଆଜିକୁ ଆଠବର୍ଷ ହେଲା ସେ ମାଙ୍କଡ଼ ସାଙ୍ଗରେ ଲଢ଼େଇ କରି ଆସିଲା। ମାଲିକ ତାରି ଲାଗି ବାଡ଼ିରେ ଫସଲ କରି ପରିବା ଖର୍ଚ୍ଚ ବାଡ଼ିରୁ ଉଠେଇଛି। ରାତି ରାତି ଅନିଦ୍ରା ହେଇ ଘର ଜଗିଛି। ସେଦିନ ଭୀମା ପାଣ ମାଲିକ ବାଡ଼ିରୁ ପୁଆଳ ଚୋରି କରୁଥିଲା। ସେ ତା ବେକଯାଏଁ ଡେଇଁ ପଡ଼ି ତାକୁ ଅଟକାଇ ପାଟି କମ୍ପେଇ ଦେଲା। ଭୀମା ପୁଆଳ ଛାଡ଼ି ଠେଙ୍ଗା ଉଠାଇ ଗୋଡ଼ ଗୋଛିରେ ତାର ପାହାର ବଢେଇଲା। ଚାରିଦିନ ସେ ଉଠି ପାରିଲାନି। ଆଜି ବି ଦୌଡ଼ୁ ଦୌଡ଼ୁ ଜଖମ ଜାଗାରେ ବେଳେବେଳେ କଣ ହୋଇଯାଏ। ସେ ଚାଲି ପାରେନି। ମାଲିକ ମୌଜ କରିବ ବୋଲି ମିଛରେ ମିଛରେ ତାକୁ ଯା ତା ପଛରେ ହୁଲେଇ ଦିଏ। ସେଦିନ ଚୌଧୁରୀ ଘର ଷେଣ୍ଢ ପଛରେ ଦୌଡ଼ିବାକୁ ମାଲିକ ଇସାରା ଦେଲା। ସେ ଯାଇଁ ଷେଣ୍ଢ ଗୋଡ଼ରେ ଛନ୍ଦି ହୋଇ ରୀତିମତ ଯୁଦ୍ଧ ଲଗେଇ ଦେଲା। ଚୌଧୁରୀ ଘର ଷେଣ୍ଢ–କମ୍ ନୁହେଁ –ଚାଲିଲେ ଗଳି ରାସ୍ତା ପୂରିଯାଏ। ଶିଙ୍ଗରେ ତାକୁ ଫୋପାଡ଼ି ଦେଲା। ନାଳ ଭିତରେ ସେ କାଚିହୋଇ ପଡ଼ିଲା। ବଡ଼ କଷ୍ଟରେ ଦଳ ଆଡ଼େଇ ଆଡ଼େଇ ପାଣି ଦି ଚାରିଥର ପିଇ ସେ କୂଳକୁ ଆସିଲା। ସେ ତ ସେଦିନ ମାଲିକ ଉପରେ ରାଗି ନ ଥିଲା। ମାଲିକର ସାନପୁଅ ସବୁଦିନେ ତାଁକୁ ଘୋଡ଼ା କରି ତା ଉପରେ ବସେ। ତାକୁ ପିଟେ। ସେଦିନ ପିଟୁ ପିଟୁ ତା ଆଖିରେ ବଜାଇ

ରକତ କାଢ଼ି ଦେଲା । ସେବେ ବି ତ ସେ ରାତିରେ ଘର ଜଗିଥିଲା ।

ଭାଲୁ ଆଜି ବୁଢ଼ା ହୋଇଯାଇଛି । ମାଲିକ ଲାଗି ସେ ଖାଲି ଲଢ଼େଇ କରି କରି ତା ବଳ ହଟିଯାଇଛି । ସେ ଯେତେବେଳେ କାମ କରୁଥିଲା ଭଙ୍ଗା ଛେଲୁଆରେ ଅଇଁଠା ଭାତ ଛଡ଼ା ତାଙ୍କୁ ତ କିଛି ଦିଆଯାଉ ନ ଥିଲା । ସେ ତ ଅଧିକା କେବେ କିଛି ଆଶା କରିନି । ଅଇଁଠା କଣ୍ଟା ଖାଇ ଦାଣ୍ଡ ଦୁଆରେ କିମ୍ୱା ବାଡ଼ି ପଛରେ ସେ ପଡ଼ି ରହୁଥିଲା । ସବୁବେଳେ ହୁକୁମକୁ କାନ ଡେରିଥିଲା ।

ମାଲିକର ବଡ଼ ପୁଅ ଏବେ କେଉଁଠୁ ଶହ ଶହ ଟଙ୍କା ଦେଇ ଗୋଟେ ବିଦେଶୀ କୁତ୍ତା ଆଣିଛି । ଦେଶୀ କୁକୁରଗୁଡ଼ାକ ଗୁଡ୍‌ବକ୍, ବୋକା ! ବିଦେଶୀ କୁତ୍ତାକୁ ମୁଣ୍ଡରେ ବସାଇ ଏବେ ସମସ୍ତେ ବୁଲୁଛନ୍ତି । ସେ ଯେତେବେଳେ ଛୋଟ ହେଇଥିଲା, ମାଲିକ ତାକୁ ବାଟରୁ ଠେଲି ଠେଲି ଘରକୁ ଆଣିଥିଲା । ଏବେ ମାଲିକର ବଂଶସାରା ଲାଗି ବିଦେଶୀ କୁତ୍ତାର ସେବା କରୁଛନ୍ତି । ତା ଗାଧୁଆ ପାଇଁ ସାବୁନ୍ ଆସୁଛି । ଚାକର ତାକୁ ଗାଧୋଇ ଦେଉଛି । ଭାଲୁ ଗଡ଼ିଆରେ ଆପେ ବୁଡ଼ି ଆସୁଥିଲା ଯେତେବେଳେ ତାର ଇଚ୍ଛା ହେଉଥିଲା । ମାଲିକଙ୍କୁ ତା ଲାଗି ତ ଖର୍ଚ୍ଚ କରିବାକୁ ପଡୁ ନ ଥିଲା । ମାଂସ ନ ହେଲେ କୁତ୍ତାର ଖାନା ଚଳୁନି । ସେ ଯେତେଦିନ ରହିଛି କଦବାଏ କିମିତି ଖାଇ ସାରିଲାପରେ ମାଂସର ଅଇଁଠା ହାଡ଼ ଛଡ଼ା କିଛି ପାଇନି । ଦିନେ ସେ ଗୋଟାଏ ମଲା ଗୋରୁର ଫଡ଼ିଆଟାଏ ଧରି ବାଡ଼ିକୁ ଚାଲି ଆସିଥିଲା । ତାକୁ ଦୁଇଦିନ ବନ୍ଧୀ ରଖି ମାଡ଼ ଦିଆଗଲା- ଖାଇବାକୁ ବି ଦିଆ ହୋଇ ନଥିଲା । ମାଲିକ ତ ଏବେ ନିଜ ହାତରେ କଞ୍ଚା ମାଉଁସ କୁତ୍ତାଲାଗି ଆଣୁଛି । ଛେଲୁଆ ଖଣ୍ଡକ ସେ ତରବରରେ ଖାଉଁ ଖାଉଁ ଦିନେ ଭାଙ୍ଗି ପକାଇଲା । ସେ ଦିନ କଣ ପୂଜା ପରବ ହୋଇଥାଏ । ଭାରି ଡେରି ହୋଇ ଯାଇଥାଏ । ଭୋକ ଲାଗୁଥିଲା । ସମାଳି ପାରିଲା ନି, ହାଉଁ ହାଉଁ ଖାଇଗଲା । ଛେଲୁଆ ଭାଙ୍ଗିଗଲା । ତା ପାଟିରେ ଭାତ ଅଛି । ତା ପିଠିରେ ମାଲିକାଣୀ ଗୋଇଠା ବଜେଇଲା । ପାଟିରୁ ତା଼ର ଭାତ ବାହାରି ପଡ଼ିଲା । ମାଲିକର ସାନ ପୁଅ ସେ ଦିନ ପିଠା ଦେଖେଇ ଦେଖେଇ ଖାଇଲା । ଦେବ ବୋଲି ତା ମୁହଁ ପାଖରେ ହଲାଇ ହଲାଇ ଖାଉଥାଏ । ସେ ଡେଇଁ ପଡ଼ି ମାଲିକର ପୁଅ ହାତରୁ ଛଡ଼ାଇ ନେଲା । ଦାନ୍ତ ଟିକିଏ ମାଲିକ ପୁଅ ହାତରେ ବାଜିଗଲା । ସେଦିନ ଯେଉଁ ମାଡ଼ ହୋଇଛି, ଛାଡ଼, ଛାଡ଼ ! କାଲି ମାଲିକର ପୁଅ ହାତକୁ ବିଦେଶୀ କୁତ୍ତା କାମୁଡ଼ି ଦେଲା । ମାଲିକ ଆସି ପୁଅ ଉପରେ ପାଟି କମ୍ପେଇଲା- ସେ କୁତ୍ତା ସାଙ୍ଗରେ ଲାଗିଲା କାହିଁକି ? ଆସିଲା ଦିନୁ କୁତ୍ତା ଦି'ଦିଟା ପ୍ଲେଟ ଭାଙ୍ଗିଲାଣି । ଦୋଷ ହେଲା ଚାକରର ।

ବିଦେଶୀ କୁତ୍ତା ମୁଣ୍ଡା ମାଂସ ଦିନ୍ ଦିନ୍ ଖାଏ । ଭାଲୁ ଦୁଆର ମୁହଁରେ ପଡ଼ି ପ[illegible] ଧକେଇ ଧକେଇ ଆସେ । ଫେରିଲା ବେଳେ ଖାଲି ଯା ମାଡ଼ଟି ଖାଇ ଫେରେ । ନଇଁ[illegible] ମଇଳା ପାଣି ଦିହରୁ ସେଦିନ ସେ ଭାତ ଦିଟା ଖୁଣ୍ଟି ଖୁଣ୍ଟି ଖାଉଥିଲା । ମାଲିକ ଦେଖି[illegible]

ସେହିଦିନ ମୁନିସିପାଲିଟି ହାଡ଼ିକୁ ବରାଦ କରାଗଲା । କୁକୁରଟା ରୋଗା, ପାଗଳ, ତାକୁ ପିଟି ଦିଆଯିବ । ମୁନିସିପାଲିଟି ହାଡ଼ି ଥରେ ଦିଥର ଚେଷ୍ଟା କରିଛି । ସେ ପ୍ରାଣ ବିକଳରେ ଇଆ ତା' ଘରେ ପଶି ନିର୍ଘୁମ୍ ମାଡ଼ ଖାଇଛି । କିନ୍ତୁ ହାଡ଼ି ହାତରୁ ପ୍ରାଣଟାକୁ ରକ୍ଷା କରି ନେଇଛି । ଆଜିକାଲି ସେ ହାଡ଼ିକୁ ଦେଖିଲେ ସିଜୁବଣ, ବାଉଁଶ-ବୁଦାରେ ନିଜକୁ ଛପାଇ ରଖେ ।

ଭାଲୁର ନିଦ ଭାଙ୍ଗିଗଲା । ଦେହରୁ ମାଡ଼ର ପରାସ ଟିକିଏ କମି ଗଲାଣି । ସେ ଝାଡ଼ିଝୁଡ଼ି ହୋଇ ଗୋଟିଏ ଗୋଟିଏ ଆଗକୁ ଆଗେଇଲା । ପେଟ ଏଣେ ଭୋକରେ ଜଳି ଯାଉଛି । ମିଛରେ ପାଟି ଚାକୁଳେଇ ନେଲା । ଦାନ୍ତ କଡ଼ରେ ଟିକିଏ ଶୁଖିଲା ମଇଳା ଅଟକି ଯାଇଥିଲା । ପୁଣି ଥରେ ଜିଭରେ ନାଳେଇ ଦେଇ ସେ ତଣ୍ଟି ପାର କରିଦେଲା । ଭୋକ କି ସମଳା ହୁଏ ? ବାଉଁଶ ବଣ କଡ଼ରେ ଖଣ୍ଡେ ଶୁଖିଲା ହାଡ଼ ପଡ଼ିଥିଲା । ସେ ଧାଇଁ ଧାଇଁ ଚୋବାଇଲା । ଆପଣା ରେଢ଼ା ଫାଟି ରକ୍ତ ବହିଲା । ନିଜର ରକ୍ତର ସ୍ୱାଦ ସେ ପାଇଲା । ସେ ଅନନ୍ଦରେ ଛେପ ଢୋକିଲା । ପରେ ପରେ ପାଟିରେ ବେଦନା ହେଲା । ସେ ପଡ଼ି ରହିଲା । ପାଟିରୁ ହାଡ଼କୁ ସେ ଛାଡ଼ି ପାରିଲାନି କିନ୍ତୁ । ଆଉ ସେ ସମ୍ଭାଳି ପାରିଲାନି । ଆଖି ଆଗରେ ତାର ବିଦେଶୀ କୁତ୍ତାର ମୁଣ୍ଡା ମୁଣ୍ଡା ମାଂସ ନାଚି ଉଠିଲା । ସେ ମାଲିକ ଦୁଆରକୁ ଚାଲିଲା । ପଛପାଖ ଦରଜା ଖୋଲା ଥିଲା । ତାକୁ ମୁଣ୍ଡରେ ଠେଲି ଦେଲା । ଆଗରେ ଲୁହା ଜଞ୍ଜିରରେ ଛନ୍ଦା ହୋଇ କୁତ୍ତା ସତକୁ ସତ ମାଂସ ଖାଉଛି । ସେ ଚାରିଆଡ଼କୁ କନକନ ହୋଇ ଚାହିଁଲା । ଦୁଆର ପାର ହେଲା, ପୁଣି ଡରି ଡରି ପଛକୁ ଫେରିଲା । କାଲିର ମାଡ଼ ମନେ ପଡ଼ିଗଲା, ଆଗରେ ଦାନ୍ତରେ ଝୁଣି ଝୁଣି କୁତ୍ତା ମାଂସ ଖାଉଛି । ପେଟ ତାର ଗରଜି ଉଠିଲା । ସେ ଗୋଟାଏ ଝାମ୍ପ ଦେଇ କୁତ୍ତାର ବେକକୁ ଧରି ନେଲା । ଦିଥର ଝୁଣିଦେଇ ଗଡ଼େଇ ପକାଇଲା । ଛୋଟ ଛୁଆଟା ପୁଣି ବନ୍ଧା ହୋଇଛି । ପ୍ଲେଟ ଉପରୁ ଖଣ୍ଡେ ମାଂସ କାମୁଡ଼ି ନେଇ ଦିଥର ଜଲଦି ଚାକୁଳାଇ ଗିଳିଦେଲା । ପୁଣି ଦୁଇଖଣ୍ଡ ଉଠାଇଲା । କୁତ୍ତାଟା କେଁ କେଁ ହୋଇ ପାଟି କମ୍ପାଉଥାଏ । ମାଲିକର ସାନ ପୁଅ ଧାଇଁ ଆସିଲା । ଭାଲୁ ପାଟିରେ ମାଂସ ଧରି ଦି'ଥର ପାଟିକରି ଧମକାଇ ଦେଲା । ଖାଇଗଲା ବୋଲି ପୁଅ କାନ୍ଦି ଉଠିଲା । ମାଲିକିଆଣୀ ରୋଷେଇ ଛାଡ଼ି ଦରଜଳା କାଠ ଖଣ୍ଡେ ଧରି ଦୌଡ଼ିଆସି ଭାଲୁ ମୁଣ୍ଡରେ ପାହାରେ ଲଗାଇଲା । ଭାଲୁ ପାଟିରୁ ମାଂସ ଖସି ପଡ଼ିଲା । ତା ମୁଣ୍ଡ ଘୁରେଇ ଗଲା । ମାଲିକିଆଣୀ ଗଡ଼ିପଡ଼ି ରଡ଼ି ଛାଡ଼ିଲା । ମାଲିକ ଦାଣ୍ଡଘରୁ ଦୌଡ଼ିଲେ । ଗାଁରୁ ଲୋକେ ଗଦେଇ ହୋଇ ପଡ଼ିଲେ । ମାଲିକ ଘରୁ ଶାବଳଟେ ଟେକି ଆଣି ଉଠେଇଲା । ଭାଲୁ ଶେଷଥର ପାଇଁ ସବୁ ବଳକୁ ଏକାଠି କରି ମାଲିକର ଜଙ୍ଘ ଉପରକୁ ଝାମ୍ପଟେ ମାରିଲା । ଶାବଳର ପାହରରେ ସେ ତଳେ ଗଡ଼ି ପଡ଼ିଲା । ମୁଣ୍ଡ ଦିଫାଳ ହୋଇଗଲା । ତା ଆଖି ପତା ନଇଁ ଆସିଲା । ସେ ଦେଖୁଥିଲା, ସେ ମାଲିକକୁ କାମୁଡ଼ିବାକୁ ଧାଉଁଛି ।

●●●

# ସାଥୀ ଓ ସନ୍ଦେଶ

ସେଦିନ ସେ ଭଙ୍ଗା ଦେଉଳର ପଥର ଖୋଲ ଭିତରୁ ଫେରି ଆସିଲା । ଦେଉଳକୁ ଫଟାଇ ବରଗଛ ଚକାମାରି ଗୋଲ ବୁଲିଯାଇଛି । ଗଛ ଉପର ଦେଇ ତାର ଘରର ସାଥୀମାନେ ଡେଣା ପିଟିପିଟି ଶୀଘ୍ର ଶୀଘ୍ର ଫେରି ଯାଉଥିଲେ । ସଞ୍ଜବେଳିଆ ସୂର୍ଯ୍ୟର ନାଲ ଖରା ପତ୍ରର ସନ୍ଧି ଦେଇ ମେଞ୍ଚା ମେଞ୍ଚା ତଳକୁ ବୋହି ପଡୁଥିଲା । ସାଙ୍ଗମାନେ ଘୁମୁରି ଘୁମୁରି ଡାକି ଯାଉଥିଲେ । କାଳେ କିଏ କେଉଁଠି ରହି ଯାଇଥିବ ? ସେ ଆଉ ରହି ପାରିଲା ନାହିଁ । ସଞ୍ଜ ହେଲା ତ ପ୍ରତିଦିନ ଆପଣା ଭାଡ଼ିକୁ ଫେରିଯିବା ତାର ଅଭ୍ୟାସ । ଛୁଆଦିନରୁ ସବୁବେଳେ ଫେରି ଯାଇଛି । ତା' ମାଆ ତାକୁ ଫେରିଯିବା ଶିଖେଇଛି । ତା' ସାଙ୍ଗମାନେ ସମସ୍ତେ ଫେରୁଛନ୍ତି । ମନ ତାର ଉଛନ୍ନ ହେଇ ଉଠିଲା । ସେ ଡେଣା ଦୁଇଟାକୁ ଉପରକୁ ଟେକି ଯୋଡ଼ିଦେଇ ଛାଡ଼ିଦେଲା । ଗୋଟେ ଗୋଡରେ ଠିଆ ହୋଇ ଆରଗୋଡ଼ ଉଠେଇ ଆଙ୍ଗୁଳି ଉପର ପତଳା ଚମଡ଼ାକୁ ଥଣ୍ଟରେ ଟିକିଏ ଖୁମ୍ପିନେଲା । ତା'ପରେ ବେକ ବଙ୍କେଇ ଦେହ ଉପରେ ଏଠି ସେଠି ଥଣ୍ଟ ଚଳେଇ ଦେଇ ଅଳସ ଭାଙ୍ଗିଲା । ଖୋଲର ଟିକିଏ ତଳକୁ ଛୋଟ ବର ଓହଳ ଆଗରେ ନୂଆ ସାଥୀଟି ତା'ର ପବନରେ ହଲି ହଲି ଦୋଳି ଖେଳୁଥିଲା । ବେଳେ ବେଳେ ଥଣ୍ଟ ମେଲା କରି ନାଲି ଖରାଗୁଡ଼ାକୁ ଢୋକ ଢୋକ କରି ପିଇ ଯାଉଥିଲା । କୁନି କୁନି ନାଲି ଆଖି ଦୁଇଟା ତା'ର ମଝିରେ ମଝିରେ ମୁଦି ହେଇ ପଡୁଥିଲା । ନାଲ ଡୋଳା କଡ଼କୁ ଆଖିର ଧୋବ ଜାଗାଟିକକ ବି ରଙ୍ଗୀନ୍ ହେଇ ଉଠିଥିଲା । ଉପରେ ପଥର ଖୋଲକୁ ଟିକିଏ ଦରମୁଦା ଆଖିରେ ଅନେଇ ଦେଇ ଓହଳ ଦିହରେ ଲାଞ୍ଜ ପିଟି ବେଶୀ ବେଶୀ ଦୋହଲି ଉଠୁଥିଲା । ପଥର ଖୋଲ ଭିତରୁ ବାହାରକୁ ଯାଉ ଯାଉ ସେ ଲୋଭ ସମ୍ଭାଳି ପାରିଲାନି । ବେକର ରେଶମୀ ଛୋଟ ଛୋଟ ପରଗୁଡ଼ିକୁ ଫୁଲେଇ ଦେଇ ସେ ଲହରେଇ ଲହରେଇ ଘୁମୁରି ଉଠି ନୂଆ ସାଥୀ ପାଖକୁ ଡେଇଁ ପଡ଼ିଲା । ଦେହ ଭିତରେ ତା'ର ନିଆଁ ଜଳି ଉଠୁଥାଏ । ନୂଆ ସାଥୀଟି କେଡ଼େ ସୁନ୍ଦର ? ତାକୁ ପାଖକୁ ଆସିବା ଦେଖି ସାଥୀ ତା'ର ଉଡ଼ିଯାଇ ଆର ଓହଳ ଉପରେ ବସିଲା । ବେକକୁ ନଇଁ ଦେଇ ଡାକଦେଲା । ସେ ଡାକ ଭିତରେ ଦାନ ଦେବ ବୋଲି ପୂରାପୂରି କହି ପକାଇଥିଲା । ଯା'ର ମନ ବେଶୀ

ବେଶୀ ବିକଳ ହେଇ ଉଠିଲା । ପ୍ରତି ପରର ମୂଳ ଦେଇ ଦେହରୁ ମେଞ୍ଚା ମେଞ୍ଚା ଗରମ ଭାବନା ପିଚିକି ପଡୁଛି । ଡେଣାର ଅଗକୁ ପିଠି ଉପରେ ନଚେଇ ନଚେଇ ସାଥୀର ପଛେ ପଛେ ଓହଳରୁ ଓହଳ ଡେଇଁ ଡେଇଁ ସେ ଛୁଟିଗଲା । ସାଥୀର ଆଗରେ ପୁଚ୍ଛକୁ ତଳେ ଢିରା ଦେଇ ବେକ ଟେକି ସାଥୀର ବାଟ ଛେକିଲା । ଶେଷକୁ ସାଥୀଟି ହସି ହସି ସୁନା ପିଲାଟି ପରି ନଇଁ ନଇଁ ଗଲା । ଗୋଟାଏ ଝାମ୍ପରେ ସାଥୀ ଉପରକୁ ସେ ଉଠିଗଲା । ତାକୁ ସେତେବେଳେ ଆଉ କିଛି ଦିଶୁନଥିଲା । ସାଥୀର ଥଣ୍ଟରେ ନିଜ ଥଣ୍ଟକୁ ଖାଲି ଏଠି ସେଠି ଠୁକେଇ ଯାଉଥିଲା । ନାଲି ଖରା ଆସ୍ତେ ଆସ୍ତେ ପାଣିଚିଆ ମାରି ଆସୁଥିଲା । ଦେହ ଓ ମନର ଉତ୍ତେଜନା ବି ତାର ପାଣି ଫାଟି ଫାଟି ଯାଉଥିଲା । ଆଖି ତାର ବନ୍ଦ ହେଇ ପଡ଼ିଲା । ସାଥୀର ବେକ ଉପରେ କୁନି କୁନି ସାଉଁଳିଆ ପର ଭିତରେ ଥଣ୍ଟ ବୁଡେଇ ସେ ଟିକିଏ ଆରାମ କଲା । ସାଙ୍ଗମାନେ ବହୁତ ଦୂରକୁ ଉଡ଼ି ଗଲେଣି । ଆକାଶ ଦିହରେ ଖାଲି କଳା କଳା ବିନ୍ଦୁ ଭଳି ଦୂରରୁ ଦିଶୁଛନ୍ତି । ତାକୁ ଯିବାକୁ ହେବ । ସେ ଡେଣାକୁ ଜୋରରେ ପଟ ପଟ କରି ପିଟିନେଲା । ଦେହକୁ ଝାଡ଼ିଦେଲା । ମୁଣ୍ଡମାଡ଼ି ଉପରକୁ ଉଠିବ ବୋଲି ପ୍ରଥମଥର ଚକର ମାରିଲ । ସାଥୀ ତାର ତଳେ ବସି ଖାଲି ମଟମଟ କରି ଚାହିଁଥାଏ । ଆଖିର ଚାହାଁଣି ଦେଇ ଗୋଟାଏ ଟାଣୁଆ ରସିରେ ସେ ଆଉ ଏକୁ ବାନ୍ଧି ପକେଇବ ? ନା, ସେ ବନ୍ଧନରେ ପଡ଼ିବନି- ଆପଣା ଭାଡ଼ିକୁ ଫେରିଯିବ । ମାଲିକ ତେଣେ ଚାହିଁ ବସିଥିବ । ସେ ଉପରକୁ ଉଠିଗଲା । ଆଖି ଆଗରେ ସାଥୀର ମୁହଁ ଝଲସି ଉଠିଲା । ସେ ଲୋଟଣି ଭାଙ୍ଗି ତଳକୁ ଥରେ ଚାହିଁଲା । ସାଥୀ ତାର ଗଛର ଅଗ ଉପରକୁ ଉଠି ଆସିଥିଲା । ତଳେ ସେ ତାକୁ ଦେଖି ପାରିଲାନି । ନା, ସାଥୀ ତାର ପଥର ଖୋଲ ଭିତରକୁ ଚାଲି ଯାଇଛି । ସେ ଖୁବ୍ ଚଞ୍ଚଳ ଚଞ୍ଚଳ ଡେଣା ବାହିଲା ।

ଘରକୁ ଫେରୁ ଫେରୁ ରାତି ହୋଇଗଲା । ସେ ଯେ ଚଞ୍ଚଳ ନିଶ୍ଚୟ ଫେରି ପାରିଥାନ୍ତା । ତା ଡେଣାରେ ଯଥେଷ୍ଟ ବଳ ଥିଲା । ମାଲିକ ଘର ଭାଡ଼ିରେ ଯେତେ ପାରା ଥିଲେ ସବୁଠୁଁ ସେ ବେଶୀ ବଳୁଆ ଥିଲା । ଭାଡ଼ି ଭିତରକୁ ଯିବାକୁ ମନ ତାର କାହିଁକି ଆଗଉ ନଥିଲା । ଅନ୍ୟଦିନ ସଂଧ୍ୟା ହେଲା ତ ସେ ଘରକୁ ଛୁଟିଯାଏ । ସେ ଦିନ ତା' ଡେଣା କାହିଁକି ମଝିରେ ଝିମେଇ ଝିମେଇ ପଡୁଥିଲା । ନୂଆ ସାଥୀର କଥା ମନଟାକୁ ଘାଣ୍ଟି ଚକଟି ପକାଉଥିଲା । ସେଦିନ ଦାନା ଖାଇସାରି ସେ ସାଙ୍ଗମାନଙ୍କ ସାଙ୍ଗରେ ବୁଲିବାକୁ ବାହାରି ପଡ଼ିଥିଲା । ସବୁଦିନ ପରି ପ୍ରଥମେ ସେ ଦି'ଚାରିଥର ଲୋଟଣି ଭାଙ୍ଗିନେଲା । ତଳେ ମାଲିକ ଓ ଦି'ଚାରିଜଣ ଠିଆ ହୋଇଥାନ୍ତି । ଲାଞ୍ଜକୁ ଖେଳାଇ ଖେଳାଇ ସେ ଲାଗ ଲାଗ ଲୋଟଣି ଭାଙ୍ଗୁଥାଏ । ତଳୁ ତାଳି ଚାପଡ଼ା କୁଢ଼େଇ ହେଇ ପଡୁଥାଏ । ମାଲିକ ଶରଧା କରି ପାଖକୁ ଡାକିଲ । ସେ ତଳେ ବସିପଡ଼ି ଘୁମୁରୁ ଘୁମୁରୁ ମାଲିକ ଉପରକୁ କୁଦି ଆସିଲା । ମାଲିକ ହାତରେ ଦାନା ଧରି ଖୁଆଇଦେଲା । ତା ପଠିକୁ ଆଉଁସି ଦେଇ ଡେଣା ଗୁଡ଼ାକୁ ଟାଣି ଟାଣି ଖୋଲି ଦେଖିନେଲା । କଡ଼ରୁ କେତେଟା ପର ମାଲିକ କାଟି ଦେଇଥିଲା । ନୂଆପର ବାହାରି ସାରିଲାଣି । ଗୋଡ଼ର ଛୋଟ ଛୋଟ ଘୁଙ୍ଗୁର ଗୁଡ଼ାକ ଛିଡ଼ିଛିଡ଼ି ଆସିଲାଣି । ମାଲିକ ଖୋଲି

ରଖିଲା । ଭାଡ଼ିର ସବୁ ପାରାଙ୍କ ଭିତରେ ଏ କାଳେ ଭାରି ସୁନ୍ଦର । ମାଲିକ ସବୁବେଳେ ଯାର ପ୍ରଶଂସା ଗାଏ । ଡେଣା ଅଧା ଧଳା ଓ ଅଧା ବାଦାମି ରଙ୍ଗର । ଲାଲ ଲାଲ ପାଟିଲା ଥଣ୍ଟ । ଗୋଡ଼ର ନାଲି ଆଙ୍ଗୁଳି ଉପରକୁ ବହଳିଆ ରୁମ । ଠିକ୍ ଆଙ୍ଗୁଳି ଉପରକୁ କେତେଟା ରୁମ ବଢ଼ି ଆସିଛି, ନାଚିଲାବେଳେ ପବନରେ ଖେଳି ଖେଳି ଦୋହଲୁଥାଏ । ମାଲିକ ପାଖରୁ ଯାଇ ଲୁହା କଡ଼ାରେ ପଶି ସେ ଗାଧୋଇ ନେଲା । ପର ଝାଡ଼ି ଝାଡ଼ି ଖରା ଖାଇବାକୁ ସେ ଛତିରି ଉପରକୁ ଉଠିଗଲା । ଉଚ୍ଚା ବାଉଁଶ ଅଗରେ ଭାଡ଼ି ଉପରେ ବସି ନେଳିଆ ସରଗ ଆଡ଼କୁ ଚାହିଁଲା । ତାକୁ କାହିଁକି ଟିକିଏ ନୂଆ ନୂଆ ଲାଗୁଥାଏ । ମୁଣ୍ଡ ଉପର ଦେଇ ଦଳେ ଅଚିହ୍ନା ପାରା ଉଡ଼ିଗଲେ । ତା ସାଙ୍ଗମାନେ ସମସ୍ତେ ଉଠିଲେ । ସେ ବି ଉଠିଲା । ଅଚିହ୍ନା ସାଙ୍ଗଙ୍କ ପିଛା ଧରି ଧରି ସେ ବହୁତ ବାଟ ଆକାଶ ଦିହରେ ଭାସି ବୁଲିଲା । ପଛପଟ ଡେଣାରେ ସେ ଟିକିଏ କାହିଁକି ପରାସ ଅନୁଭବ କଲା । ମାଲିକର ପୁଅ ଚାରିଟା ଲମ୍ବ ପକ୍ଷି କାହିଁକି ସେ ଦିନ କାଟି ପକାଇଥାଏ । ତା' ମନରେ ଭାରି ରାଗ ହେଲା । ଏ କି ସଉକ ? ତା ପକ୍ଷିଗୁଡ଼ାକ କାହିଁକି ଇମିତି କାଟି ପକେଇବେ ? ଯେଉଁମାନେ କାଟୁଛନ୍ତି ତାଙ୍କ ଦେହରେ ଯଦି ଆଘାତ ଦିଆଯାଏ, ସେମାନେ ସହିବେ କି ? ଓଃ ସାଙ୍ଗମାନେ କୁଆଡ଼େ ଯେ ଚାଲିଗଲେଣି ? ଉପରୁ ଖରା ବେଶୀ ବେଶୀ ଟାଣ ହେଉଛି । ଡେଣା ଘୋଳେଇ ପଡ଼ୁଛି । ସେ ତଳକୁ ଚାହିଁଲା । ଖାଲି ବାଲିଗୁଡ଼ାକ ଦାଉ ଦାଉ ହେଉଛି । ଦୂରରେ ଏକାଟିଆ ଗଛଟିଏ ଦିଶୁଛି । ସେଠି ଯାଇ ପହଞ୍ଚିଲେ ରକ୍ଷା । ନା, ଆଉ ପାରିବନି । ଡେଣା ଭକ୍ ଭକ୍ କରି ଉଠୁଛି । ସେ ଏପାଖ ସେପାଖ ଚାହିଁଲା । ଜଣେ ସାଙ୍ଗ ବି ନାହିଁ । ସେ କାହିଁକି ତା ଭାଡ଼ି ଛାଡ଼ି ଆସିଲା ? ଅଚିହ୍ନାଙ୍କ ସାଙ୍ଗ ହେଲେ ଏଇମିତି ପରାଭବ ମିଳେ । ସେ କ'ଣ ଗଛ ଯାଏଁ ଯାଇ ପାରିବ ନାହିଁ ? କଡ଼ ପାଖ ଡେଣା ତାର ଉଶ୍ୱାସ ଲାଗିଲା । ସେ ବୁଲି ଦେଖିଲା, ତା' ଡେଣାରେ ନୂଆ ସାଥୀଟିଏ ଆସି ଡେଣା ଯୋଡ଼ି ଦେଇଛି । ଦୁଇଜଣ ଡେଣାରେ ଡେଣା ଭିଡ଼ି ଆଗେଇ ଗଲେ । ଆହା, ସେ ଦିନଟା ସାରା ନାଚି ନାଚି କଟେଇ ଦେଇଛି । ଗହଳ ଗଛର ଡାଳ, ପୁରୁଣା ଦେଉଳର ପଥର ଖୋଲ, ଗଛ ତଳର ପତର ଶେଯ ଓ ଓହଳ ଦୋଳି ଭିତରେ ନୂଆ ସାଥୀ ସାଙ୍ଗରେ ମନଇଚ୍ଛା ଅଭିସାର କରିଛି । ଭାଡ଼ି ଭିତର ଅନ୍ୟାନ୍ୟ ମାଧି ପାରାଙ୍କ କଥା ତା'ର ମନରେ ପଡ଼ିଲା । ସମସ୍ତେ ଯା ପାଖରେ ନୀରବରେ ନଇଁ ପଡ଼ି ଯାକୁ ସୁଯୋଗ ଦିଅନ୍ତି । ନୂଆ ସାଥୀ ଭଳି ଏତେ ଶରଧା କ'ଣ କେହି ଦେଖାଇଛି ? କେତେ ସୁନ୍ଦର ସତେ ତା' ସାଥୀଟି ? ଗାଢ଼ ନୀଳ ଦେହ । ନାଲ ଥଣ୍ଟ ଯେଉଁଠୁ ବାହାରିଛି ତା' ଉପରକୁ ଟିକିଏ ଧଳାର ଚିତା । ବେକର ରେଶମୀ ପର ଉପରେ ଖରା ପଡ଼ି ଚକ୍ ଚକ୍ କରେ । ଡେଣାର କଡ଼କୁ ମୋଟା ମୋଟା କଳାର ଗାର । ଛୋଟ ଛୋଟ ଗୋଡ଼ ଦୁଇଟି ତଳକୁ ଲମ୍ବି ଆସିଛି, ପେଟର ପରଗଦା ଭିତରେ ଗୋଡ଼ ଦୁଇଟା ଖଞ୍ଜା ହେଇଛି । ସେ ପଛକୁ ଫେରିଲା । ନା, ନୂଆ ସାଥୀ ପାଖକୁ ସେ ଫେରିଯିବ । ଆସିଲାବେଳେ ସାଥୀ ତା'ର ରହିବା ଲାଗି କେତେ ଅଳି କରିଥିଲା । ସେ ପଥର ଖୋଲକୁ ଫେରିଯିବ । ପୁଚ୍ଛ ବୁଲାଇ ସେ ମୁହଁ ମୋଡ଼ିଲା । ସଞ୍ଜ ପରେ ଜହ୍ନର ଫର୍ଚ୍ଚା

ଆଲୁଅରେ ସେ ଆଗକୁ ଚାହିଁଲା । ସାଥୀର ବସା ଗଛକୁ ଛାଡ଼ି ବହୁତ ଦୂର ଆସିଗଲାଣି । ଆଏଁ, ସେ କ'ଣ କରୁଛି ? ସାଙ୍ଗମାନେ ସମସ୍ତେ ଭାଡ଼ିରେ ଯାଇ ଶୋଇବେଣି । ମାଲିକ ଏକୁ ଖୋଜୁଥିବ । ସେ ଆପଣା ଭାଡ଼ିଆଡ଼େ ପୁଣି ମୁହଁ ମୋଡ଼ିଲା ।

ଭାଡ଼ିର ମଇଳା ଗୁଡ଼ାକ ଗୋଡ଼ରେ ଠେଲି ଦେଇ ସେ ପେଟ ଲଗେଇ ବସି ବସି ଭାବୁଥିଲା । ଭାବନାରେ ମନ ତା'ର ପୋତି ହେଇ ପଡ଼ିଥିଲା । ବେଳେବେଳେ ଥଣ୍ଟଟା ଅଜାଣତରେ ତଳେ ଠୁକର ଖାଇ ଯାଉଥିଲା । ସେ ଥଣ୍ଟକୁ ଟେକି ଭାଡ଼ି କଡ଼ରେ ଢ଼ିରା ଦେଇ ଛିଡ଼ା ଭାବନାକୁ ଯୋଡ଼ିବାକୁ ଲାଗିଲା । ସେ କାଲି ତା' ନୂଆ ସାଥୀର କଥା ନ ଶୁଣି ଭାଡ଼ିକୁ ଫେରି ଆସିଲା । ଏଇ ଭାଡ଼ି ଭିତରେ ତା'ର ଜନ୍ମ ହେଇଛି । ତା' ମାଆ କହୁଥିଲା ସେ ବି ଏଇଠି ଜନ୍ମ ହେଇଥିଲା । ତା'ର ମାଆଙ୍କ ମାଆ କାଳେ ଏଇଠି ଜନ୍ମ ହୋଇ ଏଇଠି ମରିଛି । ତା' ମାଆ ପ୍ରତିଦିନ ଭାଡ଼ିକୁ ଫେରି ଆସୁଥିଲା । ସେ ବି ଛୁଆ ଦିନରୁ ସଞ୍ଜ ଆଗରୁ ଏଇ ଭାଡ଼ିକୁ ଆଜିଯାଏଁ ଫେରିଛି । ମାଲିକ ଯେଉଁଠି ଖାଇବାକୁ ଦିଏ, ସେ ଖାଏ । ମାଲିକ ତାକୁ ଯେଉଁଠି ରହିବାକୁ କହେ, ସେଠି ରହେ । ମାଲିକର ଇଛା ଯାହା ତାକୁ କରିବାକୁ ପଡ଼େ । ଦିନେ ଦିନେ ସକାଳୁ ମାଲିକ ଭାଡ଼ିର ଦୁଆର ଖୋଲେ ନା । ଭାଡ଼ିର ଦରଜାକୁ ଥଣ୍ଟରେ ସେ ଠେଲିଠାଲି ପକାଏ । ସକାଳର ନାଲି ଖରା ତାକୁ ଭାରି ଭଲଲାଗେ । ମାଲିକ ସକାଳୁ ଉଠିପାରେ ନା । ତାକୁ ଭାଡ଼ି ଭିତରେ ପଡ଼ି ରହିବାକୁ ହୁଏ । ତା' ନୂଆ ସାଥୀ କହୁଥିଲା, ତା'ର ଇଛା ଅନୁସାରେ ସେ ଚଳେ । ସକାଳର ସୂର୍ଯ୍ୟ ଉଇଁବା ଆଗରୁ ସେ ବୁଲେ । ତା' ବସାରେ କେହି ତାକୁ ଅଟକାଇ ରଖେନା । ତା' ବସାରେ ସେ ମାଲିକ । ଯାର ମନ କେମିତିକା ଖଟା ହୋଇଗଲା । ଏ ତ ନିଜେ ମାଲିକ ନୁହେଁ ? ଯାର ଜଣେ ମାଲିକ ଅଛି । ଉପର ଭାଡ଼ିରେ 'ମାଧି' ଉପରେ ଗୋଟେ 'ନର' ଆକ୍ରମଣ କରୁଛି । ତା ଆଖି ଆଗରେ ଗୋଟେ ମାଧିକୁ କିଏ ଉପଭୋଗ କରିବ, ସେ ସହିପାରେ ନା । ବେକ ବୁଲେଇ ସେ ଡେଇଁ ପଡ଼େ । ଆଜି କାହିଁକି ତା ମନ ଛୁଟି ଯିବାକୁ ମୋଟେ ରାଜି ହେଲାନି । ଉପର ଭାଡ଼ିରେ ବେଶୀ ବେଶୀ ପାଟି ହେଲା । କେଉଁ ମାଧିଟା ହେବ ? ଓଃ, ସେଇ ଚିତ୍ରାମିତ୍ରା ଟିକି ମାଧିଟା ପ୍ରାୟ । ସେ ମୁଣ୍ଡଉପର ପଟାର ସନ୍ଧିରେ ଥଣ୍ଟ ଢୁକେଇ ଉପର ଭାଡ଼ି ପାରାର ବେକରୁ କେତେଟା ପର ଟାଣି ଆଣିଲା । ହଅ, ସେ ତାଙ୍କ ମଉଜ କରନ୍ତୁ । ତା'ର କ'ଣ ଅଛି ? ସେ ତା ସାଥୀକୁ ଛାଡ଼ି ଆସିଛି । ମନ ତା'ର କ'ଣ ହୋଇଗଲା । ସେ ଭାବିଲା ନୂଆ ସାଥୀ ପାଖକୁ ସାଙ୍ଗେ ସାଙ୍ଗେ ଉଡ଼ିଯିବ । ଥଣ୍ଟରେ ଖଣ୍ଡେ ଶୁଖିଲା କାଠିଧରି ଗୋଟାଏ ପାରା ବାହାରୁ ଉଡ଼ି ଆସିଲା । ଆଉ ଗୋଟେ ଆସି ପାଟିରୁ ତା'ର କାଠି ଖଣ୍ଡି ଭିଡ଼ି ଭିତରକୁ ନେଇଗଲା । ସେ ଭାବିଲା, ସେ କାଠି ଧରି ତା ନୂଆ ସାଥୀ ପାଖକୁ ଧାଇଁ ଯିବ । ସେ ବସା ତିଆରି କରିବ । ସେ ନିଜେ ମାଲିକ ହେଇ ନିଜର ଘର ତୋଳିବ । ଏଠି ପର ଭାଡ଼ିରେ କାଠି ଖଞ୍ଜି ଲାଭ କ'ଣ ? ତଳେ ଗୋଟେ ଦାନାକୁ ଥଣ୍ଟରେ ଖୁଣ୍ଟୁ ଖୁଣ୍ଟୁ ଜଣଙ୍କର ଦାନାଟା ଟିକିଏ ଖସିଗଲା । ପାଖ ପାରାଟା ଦାନାଟାକୁ ଗିଳି ଦେଲା ? ତା'ପରେ ଦୁଇଜଣ ଖୁମ୍ପାଖୁମ୍ପି ଲାଗିଲେ । ସେ ଆଗଦିନ ହେଇଥିଲେ

ଧାଇଁ ଯାଇ ଖେଳରେ ଜୁଟି ଯାଇଥାନ୍ତା । ଆଜି ତା'ର ଯିବାକୁ ମନ ହେଲାନି । ଆଃ, ତା ନୂଆ ସାଥୀଟା ସାଙ୍ଗରେ ଏକାଟିଆ ଗଛମୂଳେ ଆଜି ଯାଇଁ ଟିକିଏ ଖେଳି ପାରନ୍ତା କି ? ପାଖ ଭାଡ଼ିର ଧଳା ମାଧିଟା ଯା ଭାଡ଼ି ଭିତରକୁ ପଶି ଆସି ପାଖକୁ ଲାଗି ଆସିଲା । ସେ ତାକୁ ଚାହୁଁ ଚାହୁଁ ତା ନୂଆ ସାଥୀ କଥା ଖାଲି ମନେ ପଡ଼ିଲା । ତା ପରେ ଧଳା ମାଧିଟା ତଳେ ଯାଇ ଦାନା ଖାଉଛି ବୋଲି ମିଛରେ ଥଣ୍ଟ ଘଷିଲା । ଯାକୁ ହସ ଲାଗିଲା । ଏଇମିତି ମିଛରେ ଥଣ୍ଟ ଘଷି ସେ ମାଧିଙ୍କୁ ପାଖକୁ ଡାକେ । ଖାଇବାକୁ ସେମାନେ ପାଖକୁ ଗଲେ ତା ଅକ୍ତିଆରରେ ପଡ଼ନ୍ତି । ତାକୁ ଓଲଟି ମାଧିଟା ଆଜି ମିଛରେ ଆଳ କାଢ଼ି ଡାକୁଛି । ଘୃଣାରେ ତା ମନ ବିଷେଇ ଉଠିଲା । ମାଲିକର ଏଇ ଚାକର ପାରାଗୁଡ଼ାଙ୍କ ସାଙ୍ଗରେ ସେ ସମ୍ବନ୍ଧ ରଖିବାକୁ କାହିଁକି ଇଚ୍ଛା କଲା ନି । ହଁ, ସେ ଆଜି ଚାଲିଯିବ । ଯାହାହେଉ ପଛେ ସେ ପଳେଇବ । ପଦାକୁ ବାହାରିଲା । ସେ ସବା ଉପରକୁ ଉଠିଗଲା । ଭାଡ଼ି ଭିତରେ 'ନର'ଟା ଭାରି ଘୁମୁରୁଛି । ମାଧିଟା ଗେଲ ହେଇ ଧରାଛୁଆଁ ଦେଉ ନି । ସେ ଭାଡ଼ି ଭିତରକୁ ପଶିଗଲା । ନର ମାଧି ଦୁଇଜଣଯାକ ଏକୁ ଖୁମ୍ପି ପକାଇଲେ । ତଡ଼ା ଖାଇ ତା ତଳ ଭାଡ଼ିକୁ ଆସିଲା । ସେଠୁ ବି ଖୁମ୍ପି ତାକୁ ଖସେଇ ଦେଲେ । ସେ ନିଜ ଭାଡ଼ିକୁ ଫେରି ଆସିଲା । ପରର ଗୋଲାମ ଗୁଡ଼ାକ ପୁଣି ମଉଜ କରୁଛନ୍ତି । ସେ କଣ ସତେ ଚାଲିଯିବ ? ବର୍ଷ ବର୍ଷ ହେଲା ଏଇ ଭାଡ଼ି ଭିତରେ ସେ ରହିଆସିଛି । ମାଲିକ ତାକୁ କେତେ ଶରଧା କରେ । ଭାଡ଼ିରୁ ଥଣ୍ଟ କାଢ଼ି ସେ ପଦାକୁ ଚାହିଁଲା । ଉପର ଭାଡ଼ିରୁ ଭଙ୍ଗା ଅଣ୍ଡା ଖୋଳଟେ ଖସି ପଡ଼ିଲା । ନା, ସେ ଯିବ । ସେ ବି ନିଜର ସନ୍ତାନ ପାଇଁ ଯୋଗାଡ଼ କରିବ । ଏଠି ନୁହେଁ । ନିଜ ଛୁଆକୁ ସେ ଗୋଲାମ କରିବ ନି । ସେ ଉଡ଼ି ବାହାରିଗଲା ।

ନୂଆ ସାଥୀ ସାଙ୍ଗରେ ଡେଣା ଯୋଡ଼ି ସେ ଉଡ଼ି ଉଡ଼ି ଯାଉଥିଲା । କୁଆଡ଼େ ଯାଉଥିଲା ସେ ଜାଣେନି । କେତେ ଦୂର ଯାଉଥିଲା ସେ ଖବର ରଖୁ ନ ଥିଲା । ସେ ଯିବ-ଯାଉଥିଲା । ମାଲିକ ତା ଭାଡ଼ି ଆଗରେ ଏଇକ୍ଷିଣି ଦାନା ବିଞ୍ଚି ଦେଉଥିବ । ନାଃ, ସେ କଥା କାହିଁକି ଆଉ ? ବେକ ମୁଣା ପାଖରୁ ଗୋଡ଼ିମିଶା ଦାନା କେଇଟାକୁ ଗିଳିବାକୁ ଯାଉଥିଲା । କାଢ଼ି ପକାଇଲା । ଗୋଲାମୀର ମୂଳ ଗଣ୍ଡାକ ତାର ସ୍ୱାଧୀନ ରକ୍ତ ଦିହରେ କାହିଁକି ଦାଗ ପକେଇବ । ସେ ଓହ୍ଲେଇ ପଡ଼ି ଝରଣା ପାଣିରେ ବୁଡ଼ି ଗାଧୋଇ ନେଲା । ଗାଧୋଇ ସାରି ସେ ଖୋଲା ଆକାଶକୁ ଚାହିଁଲା । ଦେହ ମନ ଭିତରୁ ତାର କଳଙ୍କି ପୋଛି ହେଇଗଲା । ଆଜିଯାଏଁ ସେ ମାଲିକର ଲୁହା କଡ଼ାର ପଚା ପାଣିରେ ଗାଧୋଇ ଆସିଥିଲା । ଡେଣା ଖୋଲି ପିଟି ପିଟି ସେ ପାଣି ଝାଡ଼ିଲା । ଏଥର ତା ପକ୍ଷିଗୁଡ଼ାକ ତାର ମାଲିକ ଆଉ କାଟି ପାରିବନି । ସେ କୂଳ ଆଡ଼କୁ ଚାହିଁଲା । ସାଥୀ ତାର ହସି ହସି ଆକାଶ ଆଡ଼କୁ ଇସାରା ଦେଉଛି । ସେ ଡେଣା ମେଲାଇ ଉପରକୁ ଉଠିଲା ।

ବେଳ ବହୁତ ହେଲାଣି । ସେ ଦାନା ଖାଇନି । ସେ ତଳକୁ ଆସିଲା । ଗଛ, ଲତା, ପଥର, ମାଟି ଦିହରେ ଥଣ୍ଟ ପିଟି ପିଟି ଦାନା ଦି'ଟା ପାଇଲା । ପ୍ରଥମେ ପ୍ରଥମେ ତାକୁ ଦାନା

ଦିଶିଲାନି । ମାଲିକ ଘରୁ ସେ ସବୁଦିନେ ଖାଇ ଆସିଛି । ଦାନା କେତେଟାକୁ ସାଙ୍ଗେ ସାଙ୍ଗେ ଗିଳିନେଲା । ସାଥୀ ଥଣ୍ଟରେ କିଛି ଦାନା ଆଣି ଗୁଞ୍ଜିଦେଲା । ସେ ଥଣ୍ଟ ଚଳେଇଲା । ଆଃ, ସେ ଆଜି ପ୍ରଥମ କରି ଖାଇଲା ତାର ନିଜର ରୋଜଗାର, ଆଉ ତା ସାଥୀର ଉପହାର ।

ସେ ଡେଣା ବାହୁଥିଲା । ସାଥୀ ଗପ କହୁଥିଲା । ସେମାନେ ଏଇମିତି ଖୁବ୍ ଦୂରକୁ ଯିବେ । ନିଛାଟିଆ ଗଛ ଖୋଲ ଭିତରେ ଲତା ଉହାଡ଼ରେ କୁନି ବସାଟିଏ କରିବେ । ହଁ, ସେ ନିଜେ ବସା କରିବ । ଯାକୁ ଆସିବ ନି । ଏ ମଣିଷର କାଠ କଣ୍ଟାର ଭାଡ଼ି ଭିତରେ ରହିଆସିଛି । ତାକୁ କାଠିକୁଟା ଏକା ଯେ ଯୋଗାଇ ଦେବ । ଭଲ ପତଳା ନରମ କାଠି ଦରକାର । ଛୁଆକୁ ବାଧିବ । ସେ ବସା ଭିତରେ ଅଣ୍ଡା ଦେବ । ହଁ, ହଁ, ମନେ ତ ନାହିଁ । କାଠି ଧରି ଆସିଲାବେଳେ ହୁସିଆର ହେଇ ଆସିବାକୁ ପଡ଼ିବ । ମିଛରେ ଠିକ୍ ବାଟରେ ନ ଆସି ଇଆଡ଼େ ସିଆଡ଼େ ଘୂରି ଆସିବାକୁ ହେବ । ଉପରୁ ଯଦି ବାଜ ବସାର ଠିକଣା ପାଏ, ତେବେ ସତ୍ୟାନାଶ । ଛୁଆର ବିଛଣା ପାଇଁ ନରମ ପର ଦରକାର । ଯଦି ହୁଏ ରାତିରେ ଥରେ ତା' ମାଲିକ ଘର ଭାଡ଼ି ଆଗରୁ କିଛି ପର ନେଇ ଆସିବ ।

ନାହିଁ ଗୋ ନାହିଁ । ତୁମେ ସେଠିକି ଯିବ ନି । ପୁଣି ଯଦି ସେଠି ଅଠା ଲାଗିଯାଏ ? ପାଖାପାଖି କାହା ଘରେ ପଶି ଲୁଗା ଦସି ଯଦି ପଡ଼ିଥାଏ ପଛେ ନେଇ ପଳାଇ ଆସିବ ।

ହଁ, ସେ ଅଣ୍ଡା ଦେବ । ସେତେବେଳେ ସେ ପଦାକୁ ବାହାରିବନି । ଯାକୁ ଦାନା ଆଣିବାକୁ ପଡ଼ିବ । କୁନି କୁନି ଛୁଆ ଫୁଟିବେ । ସକାଳର ନାଲି ନାଲି ଖରାରେ ଦିହ ଭିଜାଇ ଛୁଆକୁ ସେ ଖୋଲା ପଡ଼ିଆରେ ଉଡ଼େଇ ଶିଖେଇବା ପାଖରେ ଥିବ । ଆଃ, କି ଆରାମ ! ସାଥୀ ତା'ର ଯା ଡେଣା ଦେହରେ ଡେଣା ଲଦିଦେଲା । ଏ ସାଥୀର ପକ୍ଷୀର ଭାରକୁ ବୋହି ବୋହି ଆଗକୁ ଆଗକୁ ଖାଲି ଉଡ଼ିଯାଉଥିଲା । ସପନର ଢେଉକୁ ଆଡ଼େଇ ଆଡ଼େଇ ଉଡ଼ୁ ଉଡ଼ୁ ସେ ଉପଭୋଗ କରୁଥିଲା- ସେ ଆଜି ପୁରୁଷ, ସେ ହେବ କାଲି ପିତା ।

●●●

# ଶ୍ୱେତମାତଙ୍ଗ ଓ ମାଙ୍କଡସା ଉପାଖ୍ୟାନ

## ଏକ

ଘଟଣାଟାର ଫ୍ଲାସ୍‌ବେକ୍ ବା ପୂର୍ବକଥା ହେଉଛି-

ଏକଦା ଏକ ଜଙ୍ଗଲ ରାଜ୍ୟରୁ ଦୁରାଚାରୀ ପାପିଷ୍ଠ ସିଂହର ସ୍ୱାର୍ଥାନ୍ଧ ଶାସନର ଆଶୁ ଅବସାନ ପାଇଁ ବଣ ଗହଳରେ ଫୁସ୍‌ଫାସ୍, ଟୁପ୍‌ଟାପ୍ ହେଇ ଏକ ହାଇମରା କାଁ ଭାଁ ଗୁଂଜରଣ ପଶୁ-ସମାଜ ଭିତରେ ଗୁମୁସେଇ ଗୁମୁସେଇ ଗଜା ମାଇଲା । ପାଣି ପିଇସାରି ପାଟକଡ଼ ଘାଷବାଡ଼ ଭିତରେ ହାକୁଟି ମାରୁଁ ମାରୁଁ, ଦିପହରିଆ ଖରାଧାସରୁ ଦିହକୁ ଉଶ୍ୱାସ କରିବାକୁ ଲଟା ଛାମୁଣ୍ଡିଆ ତଳେ ଆସକତ ମେଣ୍ଟେଇବାକୁ ଗଡ଼ପଡ଼ ହେଉଁ ହେଉଁ, ଗଛ ଗଣ୍ଡିର ଖାବୁଖାବୁଡ଼ିଆ ବକଳ ଉପରେ ଘଷି ଘଷି ପିଠି କୁଣ୍ଡେଇଲାବେଳେ, ପଥର ଚଟାଣ ଉପରେ ଖୁରା ସଳଖାଇ ଦୁଃଖସୁଖ ହେଉଁ ହେଉଁ, ଜଣେ କହିଲେ ଆଉ ଜଣେ ଦୁଆ ଦେଇଁ ଦେଉଁ; ସମସ୍ତଙ୍କ ଭିତରେ ମିଂଜି ମିଂଜି ହେଉଥିବା ବିପ୍ଳବର ସ୍ୱରଟା ଏକାନ ସେକାନ ହେଇ ସବୁ କାନ ହୋଇଗଲା । ଭିତରର କୁହୁଳିଆ ଶୀତଳ ଯୁଦ୍ଧର ଧୂଆଁ ଶେଷରେ ଖୋଲା ମଇଦାନରେ ଜଳିଲା । ନିଆଁ ହୋଇ ଏ ବୁଦାରୁ ସେ ବୁଦାକୁ ଡେଇଁ ଡେଇଁ ଲାଗୁଁ ଲାଗୁଁ ଜଙ୍ଗଲ ସାରା ଶେଷରେ ଦାଉ ଦାଉ ହେଇ ଫଣା ଟେକିବାରୁ ପରିସ୍ଥିତି ଅସମ୍ଭାଳ ହୋଇଗଲା ଏବଂ ପ୍ରବଳ ପରାକ୍ରମୀ ସିଂହ ସମ୍ରାଟ ଶୋଚନୀୟ ଭାବରେ ପ୍ରଜା-ବର୍ଜିତ ହୋଇ ଅନୁଶୋଚନାରେ ସିଂହାସନରୁ ଆପେ ଓହ୍ଲାଇ ଆସିଲେ । ଅମକେଇ ସିଂହାବ୍ଦ, ତମକେଇ ମାସର ସମକେଇ ଦିନ ବିସ୍ତୀର୍ଣ୍ଣ ବନାଞ୍ଚଳରେ ଜଘଣ୍ୟ ଜଣ ରାଜୁତି ବଦଳରେ ପୂଣ୍ୟ ଗଣରାଜ୍ୟର ସ୍ଥାପନା କରାଗଲା । ଏହି ଐତିହାସିକ ଘୋଷଣାକୁ ବଣର ଚାରଣ ପକ୍ଷୀମାନେ ନଈନାଳ, ବଣବୁଦା, ପାହାଡ଼ ପର୍ବତ, ଅନ୍ଦିକନ୍ଦି, ଏଠି ସେଠି ସବୁଠି ପାରୁପର୍ଯ୍ୟନ୍ତ ଅତିଶୀଘ୍ର ପହଞ୍ଚାଇ ଦେଇ ସମସ୍ତଙ୍କ ପ୍ରାଣରେ ଫଣ ଫଣ ହେଉଥିବା ଅତୀତର ଅପରଛନିଆ ଅବଶୋଷକୁ ଘୁଞ୍ଚାଇ ଦେଲେ । ରାଜତନ୍ତ୍ରର ମଲାଗଲା ପଚା ଅମଳ ଉପରେ ଛେପ ପକାଇ ଜଙ୍ଗଲର ସମସ୍ତ ଅନ୍ତେବାସୀ ଜନ୍ମିତ ପ୍ରଜାତନ୍ତ୍ର ଜମାନାର କୋଷ୍ଠୀ ବିଚାର ପାଇଁ ଏକାଠି ହେଲେ । ଅନେକ ଅନେକ ଆଲୋଚନା, ତତ୍‌ପରାଲୋଚନା, ପର୍ଯ୍ୟାଲୋଚନା ସମାଲୋଚନାର ଧୂମ୍ ଉଡ଼ିଲା ପରେ, ମାଙ୍କଡ଼ ପ୍ରତିନିଧି, ରାବଣକୁ ରାମଚନ୍ଦ୍ର ସଂହାର କରି

ସୁଦ୍ଧା ତାଠୁଁ ରାଜନୀତି ଶିକ୍ଷା କରିଥିଲେ ବୋଲି ହନୁ ପୁରାଣରୁ ପ୍ରାମାଣିକ ଦୃଷ୍ଟାନ୍ତ ଦେଇ, ସିଂହାସନ ପଦ୍ଧତିକୁ ଚାଲୁ ରଖିବାକୁ ପ୍ରସ୍ତାବ ଆଗତ କରିବା ହେଲେ ଏବଂ ତାହା ବିଚାର ପରେ ବହୁମତରେ ବିପୁଳ ହର୍ଷଧ୍ୱନି ମଧ୍ୟରେ ଗୃହୀତ ହେଲା ।

ଶାସନକ୍ଷେତ୍ରରେ ସିଂହାନୁଧାବନ ଅର୍ଥାତ୍ ସିଂହ-ଶାସନଧାରା ପୂର୍ବପରି ବିନା ବ୍ୟତିକ୍ରମରେ ବ୍ୟବସ୍ଥିତ ହେଲା । ସିଂହ ପ୍ରବର୍ତ୍ତିତ ଶ୍ୱେତ ମାତଙ୍ଗ ପଦ୍ଧତିର ଅନୁସରଣରେ ସବୁ ବିଭାଗର ମୁଖ୍ୟରୂପେ ଶ୍ୱେତ ମାତଙ୍ଗ ଶ୍ରେଣୀ ସଂସ୍ଥାପିତ ହେଲେ । ଅବଶ୍ୟ ପୂର୍ବ ବିଧିକୁ ପୂର୍ବବତ୍ ପାଳି ସେମାନେ ବନବିଜ୍ଞାନ ଓ କାନନ କଳାର ସ୍ୱତନ୍ତ୍ର ପରୀକ୍ଷାରେ କୃତିତ୍ୱ ହାସଲ କରି ଶ୍ୱେତମାତଙ୍ଗର ମୋହର ଗ୍ରହଣ କରିବାକୁ ବାଧ୍ୟ ରହିବେ । ସେ ସମ୍ପ୍ରଦାୟର ପାରମ୍ପରିକ ଆଚରଣ ବିଧି ପୂର୍ବପରି ଅନୁସୃତ ହେବ । ଯଥା-ସେମାନଙ୍କର ନାରୀମାନଙ୍କର ସରକାରୀ ଆସର ତଥା ଅନ୍ୟାନ୍ୟ ମର୍ଯ୍ୟାଦାବନ୍ତ ଅବସର ବିନୋଦନ ମଧୁଚକ୍ର ମାନଙ୍କରେ ମଧୁ ଆଦାନ ପ୍ରଦାନ ପାଇଁ ସମ୍ପୂର୍ଣ୍ଣ ସ୍ୱାଧୀନତା ରହିବ; ସେମାନେ ସନ୍ତାନମାନଙ୍କୁ ସ୍ତନ୍ୟଦାନ ବା ସେମାନଙ୍କର ପାଳନ ପାଇଁ ଗତାନୁଗତିକ ନାରୀ ଧର୍ମ ପାଳିବାକୁ ବାଧ୍ୟ ରହିବେ ନାହିଁ; ଅନ୍ୟତ୍ର ଅନ୍ୟ ଓ ନିଜର ଆବଶ୍ୟକ ମୁତାବକ ସେମାନେ ବିନା ବାଧାରେ ରାତ୍ରିଯାପନ କରିପାରିବେ, ଇତ୍ୟାଦି ଇତ୍ୟାଦି ଯେଉଁ ମୌରସୀ ଆଦବ୍‌କାଇଦା ଆଗରୁ ଚାଲି ଆସୁଥିଲା, ଏବେ ଅବିକଳ ସେଇମିତି ଠିକ୍ ଠିକ୍ ଚାଲୁ ରହିବ । ତେବେ ଗଣତନ୍ତ୍ରର ଆତ୍ମାପୁରୁଷ ସଂରକ୍ଷଣ ତଥା ସମ୍ମାନ ଜ୍ଞାପନ ନିମିତ୍ତ ଶ୍ୱେତ ମାତଙ୍ଗମାନଙ୍କ ନିଯୁକ୍ତି କ୍ଷେତ୍ରରେ ନିମ୍ନଶ୍ରେଣୀୟ ପଶୁ ସମାଜର ପ୍ରାର୍ଥୀମାନଙ୍କ ପାଇଁ ସ୍ୱତନ୍ତ୍ର ସ୍ଥାନ ଓ ବିଶେଷ ରିହାତିର ବ୍ୟବସ୍ଥା କରାଗଲା ଏବଂ ଏବଂବିଧ ସମ୍ବିଧାନିକ ଗଣସ୍ୱାର୍ଥୀ ନୀତି ନିର୍ଦ୍ଧାରଣରେ ତଳସ୍ତରର ପଶୁ ସମାଜ ଅତିମାତ୍ରାରେ ଆପ୍ୟାୟିତ ହେଲେ ।

## ଦୁଇ

ଜଙ୍ଗଲର ଅଭ୍ୟନ୍ତର । ମଧ୍ୟାହ୍ନର ସମୟ ଓହ୍ଲେଇ ଆସିଛି । ପ୍ରକାଣ୍ଡ ଶାଳଗଛର ଗୋଟାଏ କେନାରୁ ଆଉ ଗୋଟାଏ ଡାଳକୁ ଯୋଡ଼ି ଖୁବ୍ ବଡ଼ ମାଙ୍କଡ଼ସା ଜାଲଟା ତଳକୁ ଓହ୍ଲେଇ ପଡ଼ିଛି । ସେ ଜାଲ ଭିତରେ ବୁଢ଼ୀ ମାଙ୍କଡ଼ସାଟିଏ ତଳ ଉପରେ ହେଇ ତା ପାଟି ନାଳର ସରୁ ସରୁ ତାରକୁ ଛନ୍ଦି ଛନ୍ଦି ତା ବସାକୁ ବେଶୀ ବେଶୀ ଚଉଡ଼ା କରିବାକୁ ସକାଳ ପହରୁ ଲାଗି ପଡ଼ିଛି । ଥକି ଯିବାରୁ ତା ବସା ମଝିର ଜାଲ-ଭଉଁରୀ ଭିତରେ ବସି ନିଜର ଅସାମାନ୍ୟ ଶିଳ୍ପକୃତିକୁ ଅନେଇ ଆସକତ ମେଣ୍ଟାଉଛି ।

ହଠାତ୍ ଶିଳ୍ପ ମହକୁମାର ମୁଖ୍ୟ ମୂଷିକ ଶ୍ୱେତମାତଙ୍ଗ, ଅବଶ୍ୟ ସଂରକ୍ଷିତ କୋଟାର ପ୍ରାର୍ଥୀରୂପେ ଏ ପଦବୀରେ ତାଙ୍କର ଗାଦିନସିନ୍ ହୋଇଥିଲା, ତାଙ୍କ ଦପ୍ତରର ଅଧସ୍ତନ ମାନଙ୍କର ଗଂହଣରେ କାର୍ଯ୍ୟ ନିରୀକ୍ଷଣ ଉପଲକ୍ଷ୍ୟ ନେଇ ସେଠାରେ ପହଞ୍ଚିବା ହେଲେ ।

ଅତିରିକ୍ତ କର୍ମକ୍ଳାନ୍ତ ଯୋଗୁଁ ସେତେବେଳେକୁ ବୁଢ଼ା ମାଙ୍କଡ଼ସାର ଆଖି ଟିକିଏ ଲାଗି ଲାଗି ଆସୁଥିଲା । ତେଣୁ ଉପରିସ୍ଥ ହାକିମଙ୍କ ଉପସ୍ଥିତିକୁ ସେ ଜାଣିପାରିବା ଅବସ୍ଥାରେ ନଥିଲା । ଶ୍ରୀ ମୂଷିକ ଶ୍ୱେତମାତଙ୍ଗ ମାଙ୍କଡ଼ସାର ଏତାଦୃଶ କର୍ମ ଖିଲାପ ତଥା ଅକ୍ଷମଣୀୟ ଅଶିଷ୍ଟାଚାରରେ ଉତ୍କ୍ଷିପ୍ତ ହୋଇ ତାଙ୍କର ଗୃହସେବାକାରୀ ଚତୁର୍ଥଶ୍ରେଣୀ କର୍ମଚାରୀ ଛୁଚ୍ଛୁନ୍ଦ୍ରା ଦାସକୁ ନିର୍ଦ୍ଦେଶ ଦେବା ଦୃଷ୍ଟିରେ, ଚାହିଁବା ହେଲେ । ଛୁଚ୍ଛୁନ୍ଦ୍ରା ତା ଦେହର ଗନ୍ଧ ଛାଡ଼ି ତା ସ୍ୱାଭାବିକ 'ଚିଁ' ଘଣ୍ଟି ବଜାଇ ଦେବାରୁ ମାଙ୍କଡ଼ସା ଉଠିପଡ଼ି ସମ୍ମୁଖରେ ସ୍ୱୟଂ ଶ୍ୱେତମାତଙ୍ଗଙ୍କୁ ଦେଖି ଟିକିଏ ଘବେଡ଼େଇ ଗଲା ଭଙ୍ଗୀରେ ସମ୍ମାନ ଜ୍ଞାପନ ସହ ହାକିମଙ୍କ ହୁକୁମକୁ ଅପେକ୍ଷା କରି ରହିଲା । ଶ୍ୱେତମାତଙ୍ଗଙ୍କର ନିୟତ ପଛଗାମୀ ନିଜ ଗୁମାସ୍ତା ଦର୍ଦ୍ଦୁର ଲିପିକାର ମୁଖ୍ୟଙ୍କ ଶ୍ରୀମୁଖର ସଦୈବ ବ୍ୟାକରଣ ଶୂନ୍ୟ ଆଦେଶକୁ ଭାଷା ମାଧ୍ୟମରେ ଲିପିବଦ୍ଧ କରିବାକୁ ଲକ୍ଷ୍ୟ ରଖି ନିଜକୁ ସଳଖ କରି ପତ୍ର ଫଳକ ପାଖରେ କାଳି କଲମର ପ୍ରସ୍ତୁତି ନେଇ ନିଜକୁ ଟିକିଏ ପ୍ରଶସ୍ତ କରିନେଲା । ବାଦ ବିସମ୍ବାଦର ପ୍ରଶ୍ନ ନ ରହି ଦପ୍ତରର କାମ ସବୁ ସୁରୁଖୁରୁରେ ହେବ ବୋଲି ମୁଖ୍ୟ ଶ୍ରୀ ମୂଷିକ ନିଜ ସାଇପଡ଼ିଶାଙ୍କୁ ତାଙ୍କ ମହକୁମାରେ ନିଯୁକ୍ତି ଦେଇଛନ୍ତି ବୋଲି, ଉପରିସ୍ଥ ସମସ୍ତଙ୍କୁ ବୁଝାଇ ଦେଇଥିଲେ ମଧ୍ୟ, କାଳେ ଅନ୍ୟ କିଛି ବୁଝିଥିବେ ବୋଲି, ଏବେ ସୁଦ୍ଧା ସବୁବେଳେ ସୁବିଧା ପାଇଲେ ବୁଝାଇ ଆସୁଛନ୍ତି ।

ହଁ, ଏତିକିବେଳେ ଗୋଟାଏ ଭୋକିଲା କୁଆ ତଳୁ ଫାପୁଲା ମୂଷାଟାକୁ ଝାମ୍ପି ନେବାକୁ ଆସି ତା ଡ଼େରାରେ ଶ୍ୱେତମାତଙ୍ଗର ସନ୍ତକ ଦେଖି ନିଶ୍ଚିତ ଆହାର ହରାଇ ହାଇପିସାପି ହେଇ ଫେରିଗଲା ବେଳେ, ତା ଡେଣାବାଜି ମାଙ୍କଡ଼ସା ଜାଲର କିଛି ଅଂଶ ଛିଡ଼ିଗଲା । ଅବଶ୍ୟ ଶ୍ରୀ ମୂଷିକ ଶ୍ୱେତମାତଙ୍ଗଙ୍କ ଅଗୋଚରରେ ଏପରି ଘଟଣାଟା ଘଟି ଯାଇଥିଲା । ପରେ ଛିଡ଼ାଜାଲ ଉପରେ ନଜର ପଡ଼ିବାରୁ ମୁଖ୍ୟ ଶ୍ରୀମୂଷିକ ସୁବିଧା ପାଇ ତାଙ୍କର ତଦାରଖ ଆରମ୍ଭ କରିଦେଲେ । ବଣରାଜ୍ୟର ଶିଳ୍ପିମାନେ ଦୁର୍ନୀତିଗ୍ରସ୍ତ ହୋଇ ଶସ୍ତାମାଲ ଉତ୍ପାଦନ କରୁଥିବାରୁ ରାଜ୍ୟରେ ଶିଳ୍ପର ମାନ ଶୋଚନୀୟ ଭାବରେ ନ୍ୟୂନ ହୋଇଯାଇଛି । ଶ୍ରୀମୁଖ୍ୟ ମାଙ୍କଡ଼ସାର ଠକାଠକି କାରବାର ଉପରେ ଟାଣୁଆ ଟିପ୍ପଣୀ ଦେଇ ନୋଟ କରିନେବାକୁ ଦର୍ଦ୍ଦୁର ଲିପିକାରକୁ ସଂକେତ ଦେଲେ । ତା' ପରେ ମାଙ୍କଡ଼ସା ବୈଷୟିକ ଜ୍ଞାନ ଉପରେ କିଛି ଉପାଧି ହାସଲ କରିଛି କି ନାହିଁ, ଜାଣିବାକୁ ଚାହିଁଲେ । ତାଳର ଭୂଗୋଳ, ଲାଳର ବିଜ୍ଞାନ, ପାଗର ଇତିହାସ, ବୁଣାର କଳା, ଜାଲର ସାହିତ୍ୟ, ଚାଲିର ସଂଗୀତ ଉପରେ ଯଥେଷ୍ଟ ଅନୁଧ୍ୟାନ ନଥିବାରୁ ମାଙ୍କଡ଼ସା ଭଳି ମଫସଲି କଞ୍ଚା କର୍ମକାରମାନେ ଦେଶକୁ ଶିଳ୍ପ ସମୃଦ୍ଧ କରିବାକୁ ଏକାନ୍ତ ଅକ୍ଷମ ହେଇ ପଡୁଛନ୍ତି ।

ମାଙ୍କଡ଼ସା ବିନୀତ ଭାବରେ କୈଫତ୍ ଦେଲା ଯେ ସେ ସାହିତ୍ୟ, ସଙ୍ଗୀତ, ଭୂଗୋଳ, ଇତିହାସ, କଳା, ବିଜ୍ଞାନ କିଛି ପଢ଼ିନି ସତ ; କିନ୍ତୁ ଏଇମିତି ଜାଲ ତା ହେତୁହେଲା ଦିନରୁ ବୁଣି ଆସୁଛି । ଏଥିପାଇଁ ତା ବାପ ପାଖରୁ ବହୁତ କହୁଣି ବି ଖାଇଛି । ତା ବାପ, ଗୋସାପ, ଅଣଗୋସାପ, ପଣଗୋସାପ ସମସ୍ତେ ଜାଲ ବୁଣିଛନ୍ତି । ସେ ବୁଣୁଛି । ହଜୁରଙ୍କ

ଖିଆଲ ନାହିଁ ହୋଧହୁଏ କୁଆଟେ ତା ଡେଣା ପିଟିଦେଇ ଜାଲଟାକୁ ଛିଣ୍ଡାଇ ଦେଲା । ପ୍ରାକୃତିକ ବିପଦକୁ ଚାରା କଣ ଅଛି ?

ଶ୍ରୀମୂଷିକ ଶ୍ୱେତମାତଙ୍ଗ କୁଆର ପ୍ରବେଶ ବାର୍ତ୍ତାରେ ଟିକିଏ ଇତସ୍ତତଃ ହୋଇ ପଡ଼ିଲେ ମଧ୍ୟ ଉପରେ ନିଜକୁ ସଜାଡ଼ି ନେଇ ଅତି ଆଡ଼୍‌ଡ଼ାରେ ଚିଡ଼ି ଚିଡ଼ି ହୋଇ କହିଲେ ଯେ ଏସବୁ ଅବାନ୍ତର କାରଣ ଗ୍ରହଣ କରିବାକୁ ସେ ମୋଟେ ପ୍ରସ୍ତୁତ ନୁହଁନ୍ତି । ତାପରେ ସେ ଆସିଲାବେଳେ ମାଙ୍କଡ଼ସା ଶୋଇ ପଡ଼ିଥିଲା । ଆଳସ୍ୟ ଏ ଜାତିର ମଜ୍ଜାଗତ କଳଙ୍କ । ଏଥିପାଇଁ ଏ ଜଙ୍ଗଲ ରାଜ୍ୟ ବିଦେଶୀ ଜଙ୍ଗଲ ଦେଶମାନଙ୍କର ବିଦ୍ରୁପର ପାତ୍ର ହେଉଛି । ମୋଟ ଉପରେ ବୁଢ଼ା ମାଙ୍କଡ଼ସା ଜାଲ ଶିଳ୍ପ ପାଇଁ ଏକାନ୍ତ ଅନୁପଯୁକ୍ତ । ତାପରେ ପ୍ରାକୃତିକ ବିପଦ ଘଟିଛି ବୋଲି, ତାଙ୍କର ଅତ୍ୟନ୍ତ ଉପସ୍ଥିତିରେ ସୁଦ୍ଧା ମାଙ୍କଡ଼ସା ମିଥ୍ୟାର ଆଶ୍ରୟ ନେଉଛି । ବନାଞ୍ଚଳରେ କୌଣସି ବର୍ଷା, ତୋଫାନ ଆଦି ବିପଦ କିମ୍ବା ଆନ୍ତର୍ଘାତୀ କାର୍ଯ୍ୟକଳାପ ଚାଲିଛି ବୋଲି ରାଜନୈତିକ କର୍ମୀମାନେ ସ୍ୱର ଉତ୍ତୋଳନ କରି ନାହାନ୍ତି । ମାଙ୍କଡ଼ସା ପରି ଆଳସ୍ୟପରାୟଣ ଅଣ ତାଲିମପ୍ରାପ୍ତ ଶିଳ୍ପୀମାନେ ରାଜ୍ୟର ପ୍ରଗତିକୁ ବ୍ୟାହତ କରୁଛନ୍ତି ।

ବୁଢ଼ା ମାଙ୍କଡ଼ସା ମୂଷାର ହୁମାପେଲା ହାକିମଗିରି ଓ ଡମ୍ଫା ଫୁଟାଣି ଦେଖି ତାକୁ ଟିକିଏ ଚିମୁଟି ଦେବାକୁ ଇଚ୍ଛାକଲା । କାମ ଧାର ଧରୁ ନଥିବା ଅପଗଣ୍ଡମାନେ କାମ କରୁଥିବା ଲୋକଙ୍କ ମୁଣ୍ଡରେ ଚଢ଼ିବାକୁ ସେ ବରଦାସ୍ତ କରି ପାରିଲାନି । ସେ ସାମାନ୍ୟ ଛଳେଇ ଛଳେଇଂ ଜବାବ ଦେଲା ଯେ ମହାମାନ୍ୟମାନେ ତ ଶ୍ୱେତମାତଙ୍ଗ ଚିହ୍ନ ଦିହରେ କୁଟି ସବୁ କଥାର ସବ୍‌ଜାନ୍ତା ମଣିଷ ହେଇ ରାଜ୍ୟର ମାଲିକ ସାଜିଛନ୍ତି । ଜାଲଟା କେମିତି ବୁଣାହେବ, ସେ ଥରେ ଦେଖେଇ ଶିଖେଇ ଦିଅନ୍ତୁ । ନ ହେଲେ ସେ ନିଜେ ଜାଲ ତାଙ୍କ ଆଗରେ ବୁଣୁଛି ଶ୍ରୀହଜୁର ଦେଖିବା ହେଉନ୍ତୁ ଏବଂ ଶିଳ୍ପ ପାଇଁ ସେ ଯୋଗ୍ୟ କି ଅଯୋଗ୍ୟ ପରୀକ୍ଷା କରନ୍ତୁ । ତାପରେ ବୁଢ଼ା ମାଙ୍କଡ଼ସା ପାଟିରୁ ଲାଳ ଓକାଳି ଜାଲ ବୁଣିବାକୁ ଲାଗିଲା । ଶ୍ରୀମୂଷିକ ବୁଣିବାର କୌଶଳକୁ ଦେଖି ସୁଦ୍ଧା ଦେଖି ପାରୁନଥିଲେ । ସେତେବେଳେକୁ ଶ୍ୱେତମାତଙ୍ଗ ଧୈର୍ଯ୍ୟର ଧମନୀ ଭିତରୁ ସ୍ୱାଭାବିକ ରକ୍ତ ଯାହା ଟିକକ ଥିଲା ସେତକ ଗାଳି ଦେଇ ହାକିମଗିରିର ଟକଟକ ଫୁଟିଲା ଲହୁ ମୁଣ୍ଡରୁ ଗୋଡ଼ଯାଏଁ ପହଁରାଉ ଥିଲେ । ଅବଶ୍ୟ ଶ୍ୱେତମାତଙ୍ଗ ମୋହର ତାଙ୍କ ଦେହରେ ବସିଲା ଦିନଠୁଁ ସେ ତାଙ୍କ ଦେହରୁ ଅଧିକାଂଶ ସ୍ୱାଭାବିକ ରକ୍ତକୁ ନିକାଲି ଦେଇ ସାରିଥିଲେ । ବୁଢ଼ା ମାଙ୍କଡ଼ସାର ଏତାଦୃଶ ଅବାଧ୍ୟତା ଓ ଅନଧସ୍ତନତା ଯୋଗୁଁ ବିହିତ ଶାସ୍ତିବିଧାନ ଲାଗି ସେ ବଦ୍ଧପରିକର ହୋଇ ଯାଇଥିଲେ ।

ଏଘଟଣାର ଅଳ୍ପ କିଛିଦିନ ପରେ ସରକାରଙ୍କ ଦପ୍ତରରୁ ଜଣେ କଲମୀ ବାବୁ ବୁଢ଼ା ମାଙ୍କଡ଼ସା ହାତରେ ପରବାନା ଧରାଇ ଦେଇ ଜଣାଇ ଦେଲା ଯେ ସରକାର ବାହାଦୂର ଆନନ୍ଦିତ ହୋଇ ତାକୁ ଶିଳ୍ପକର୍ମରୁ ବାଧ୍ୟତାମୂଳକ ଅବସର ଗ୍ରହଣ କରିବାକୁ ନିର୍ଦ୍ଦେଶ ଦେଇଛନ୍ତି ।

ବୁଢ଼ା ମାଙ୍କଡ଼ସା ହସିବ କି କାନ୍ଦିବ କିଛି ବୁଝି ନପାରି ତା ଜାଲ ଭିତରେ ଲଟକି କଥାର କୂଳ କିନାରା ପାଉ ନଥିଲା । ପାଖ ଡାଳରୁ ଗୋଟେ ବୁଢ଼ା ଝିଣ୍ଟିକା ମାଙ୍କଡ଼ସା ଏମିତି ଝିମୋଉଥିବା ଦେଖି, ଘଟଣାଟା ଜାଣିବାକୁ ତା ପାଖକୁ ଆସିଲା । ବୁଢ଼ା ମାଙ୍କଡ଼ସା ଚୁମ୍ବକରେ ସବୁକଥା କହିଦେଇ, ଅବଶୋଷ କଲା ଯେ ସେ ଜାଲ ବୁଣିଥିଲା ଦେଖିଲେ, ସେ ଜାଲ ବୁଣିକି ବି ଦେଖାଇଲା ; କିନ୍ତୁ ସେ ବୁଣାଳୀ ନୁହେଁ ବୋଲି ତାକୁ ବରଖାସ୍ତ କରାଗଲା ।

ତାପରେ ବୁଢ଼ା ମାଙ୍କଡ଼ସା ବୁଢ଼ା ଝିଣ୍ଟିକାକୁ ଶୁଣିଥିବା ଗୋଟାଏ ଗପ କହିଲା । ଦିନେ ଜଙ୍ଗଲକୁ ମଣିଷ ରାଜ୍ୟର କେତେକ ପଢୁଆ ଲୋକ ମଉଛବ କରିବାକୁ ଆସିଥିଲେ । ତାଙ୍କ ଭିତରୁ ଜଣେ ଗପଟା କହିଥିଲା । ଗପଟା ହେଉଛି-ଥରେ ଜଣେ ମଣିଷକୁ ଆଉ ଜଣେ ମଣିଷ କହିଲା ଯେ ଜିରାଫର ବେକଟା ଗଛର ଗଣ୍ଡିଭଳି ଖୁବ୍ ଲମ୍ବା । ଶୁଣିବା ଲୋକ କହିଲା ଯେ ସେ ଏକଥା ବିଶ୍ୱାସ କରୁନାହିଁ । କହିବା ଲୋକ ତାକୁ ଚିଡ଼ିଆଖାନାକୁ ନେଇ ଜିରାଫ ଦେଖାଇ ଦେଲା । ଦେଖି ସାରିଲା ପରେ ମଧ୍ୟ ଦେଖିବା ଲୋକ କହିଲା ଯେ ସେ ଜିରାଫ ଦେଖିଛି ବୋଲି ବି ସେ ବିଶ୍ୱାସ କରି ପାରୁନି ।



# ମନୁଷ୍ୟ ଉପାଖ୍ୟାନମ୍

ଏକଦା ଏକ ପର୍ବତ ପ୍ରାଙ୍ଗଣରେ ପଶୁମାନଙ୍କର ଅତି ଗୁରୁତ୍ୱପୂର୍ଣ୍ଣ ଦରବାର ବସିଥିଲା । ସ୍ୱୟଂ ପଶୁସମ୍ରାଟ ସିଂହ ଜରୁରୀ ହୁକୁମନାମା ଜାରିକରି ଏ ଦରବାରର ଆୟୋଜନ କରିଥିଲେ । ଜଙ୍ଗଲର ସମସ୍ତ ପଶୁମାନଙ୍କ ପାଖରେ ଶ୍ରୀଛାମୁଙ୍କ ମୁଖ ନିସୃତ ଆଦେଶ ପହଞ୍ଚାଇ ଦିଆଯିବା ପରେ ବିଶିଷ୍ଟ ପାରିଷଦ ରୂପେ ହାତୀ, ବାଘ, ସାପ, ଶିଆଳ ଓ ମୂଷାଙ୍କ ପାଖକୁ ଦ୍ରୁତଗାମୀ ବାର୍ତ୍ତାବହ ହାତରେ ସ୍ୱତନ୍ତ୍ର ନିମନ୍ତ୍ରଣ ପଠାଯାଇଥିଲା । ପକ୍ଷୀସମାଜ ପକ୍ଷରୁ ପ୍ରତିନିଧିତ୍ୱ କରିବା ପାଇଁ ଶାଗୁଣାକୁ ଶ୍ରୀହଜୁରଙ୍କ ଇଚ୍ଛା ମଧ୍ୟ ଜଣାଇ ଦିଆ ଯାଇଥିଲା । ଏପରି ହଠାତ୍ ଏକ ଦରବାରର ଉଦ୍ଦେଶ୍ୟ ସଂପର୍କରେ ସମ୍ରାଟ କୌଣସି ଶ୍ୱେତପତ୍ର ବା ବିଶେଷ ବିଜ୍ଞପ୍ତି ପ୍ରକାଶ କରି ନଥିଲେ । କେବଳ ଦେଖା ଯାଇଥିଲା, ମହାମାନ୍ୟ ସମ୍ରାଟ କେତେଦିନ ହେଲା ଅତିମାତ୍ରାରେ ଚିନ୍ତାଗ୍ରସ୍ତ ହୋଇ ପଡ଼ିଥିଲେ । ଶ୍ରୀଅଙ୍ଗରେ କିଛି ଦୁଃଖ ହୋଇଛି ବୋଲି ଅନୁମାନ କରି ସମ୍ରାଟଙ୍କର ପାର୍ଶ୍ୱଚରମାନେ ପଶୁବୈଦ୍ୟ ବଳିଆ କୁକୁରକୁ ସନ୍ଦେଶ ଦେଇଥିଲେ । କିନ୍ତୁ ସମ୍ରାଟ ତାଙ୍କର ଦୈହିକ ଚିକିତ୍ସା ପାଇଁ ପରାଙ୍ମୁଖ ଥିବାର ଦେଖି ବୈଦ୍ୟ ମହାଶୟଙ୍କୁ ନିଦାନ ପୋଥି ଧରି ଫେରିବାକୁ ପଡ଼ିଥିଲା । ସମ୍ରାଟ ସବୁବେଳେ ଗମ୍ଭୀର ରହୁଥିଲେ । ଅଧିକାଂଶ ସମୟରେ ଗୁମ୍ଫାର ନିଭୃତ ଅଭ୍ୟନ୍ତରରେ ଏକୁଟିଆ ବସି ଭାବାବିଷ୍ଟ ରହୁଥିଲେ, ଏବଂ ହଠାତ୍ ବାହାରକୁ ଆସି ଉତ୍ତେଜିତ ଅବସ୍ଥାରେ ପଦଚାରଣ କରୁ କରୁ କ୍ରୋଧ ସମ୍ବଳିତ ସ୍ୱଗତୋକ୍ତି ସହ ଲମ୍ଫ ପ୍ରଦାନ କରୁଥିଲେ । ସମ୍ରାଟଙ୍କର ଏପରି ଉଦ୍‌ଭ୍ରାନ୍ତ ଅବସ୍ଥାର କାହାଣୀ ଅରଣ୍ୟ ସାମ୍ରାଜ୍ୟରେ ଶୀଘ୍ର ପ୍ରଚାରିତ ହୋଇ ଯାଇଥିଲା । ହଠାତ୍ ଦରବାରର ବ୍ୟବସ୍ଥା ପ୍ରଜାପୁଞ୍ଜଙ୍କ ଭିତରେ ଭୀତି ସଂଚାର କରିଥିଲା ।

ଦରବାର ପ୍ରାଙ୍ଗଣରେ ସମସ୍ତ ପଶୁବର୍ଗ ତ୍ରସ୍ତ ଚିତ୍ତରେ ସମ୍ରାଟଙ୍କୁ ଅପେକ୍ଷା କରି ବସିଥିଲେ । ବିଶେଷ ରୂପେ ନିମନ୍ତ୍ରିତ ହୋଇଥିବା ପାରିଷଦମାନେ ସମ୍ରାଟଙ୍କର ଏପରି ଅଚାନକ ଆହ୍ୱାନର କିଛି କୂଳକିନାରା ନପାଇ ଶଙ୍କାକୂଳ ହୋଇ ପଡ଼ିଥିଲେ । ସମସ୍ତଙ୍କ ମନ ଉପରେ ଅନିଶ୍ଚିତ ଆଶଙ୍କାର ଚିନ୍ତା ମଝିରେ ମଝିରେ ଜଳି ଉଠୁଥିଲା ଏବଂ ସେମାନେ ଅନାଗତ ବିପତ୍ତିର ବିଭୀଷିକାକୁ ସନ୍ଦେହ କରି କରି ମ୍ରିୟମାଣ ହୋଇ ପଡୁଥିଲେ ।।

ହାଠାତ୍ ଗୁହା ପ୍ରାସାଦର ବୃତ୍ତିଭୋଗୀ ବୈତାଳିକ ଶଶକଭଟ୍ଟ 'ଛାମୁଛାଡ଼ ଛାମୁଛାଡ଼' ବୋଲି ପାରମ୍ପରିକ ସ୍ୱରରେ ଚିହ୍ୱାର କରି ମହାପ୍ରତାପୀ, ମହାରଣ୍ୟ ପୂଣ୍ୟପୁରୁଷ, ପଶୁକୁଳ-ତିଳକ ସିଂହ ସମ୍ରାଟଙ୍କର ବେହରଣକୁ ବିଜେହେବା ବାର୍ତ୍ତା ଜଣାଇ ଦେଲା ।

ସମ୍ରାଟଙ୍କ ଆଗମନ ମାତ୍ରେ ସମସ୍ତେ ସ୍ୱସ୍ଥାନରୁ ଉତ୍‌ଥିତ ହୋଇ ଅଭିନନ୍ଦନ ଜଣାଇଲେ ଏବଂ ପରେ ପରେ ପଶୁରାଜ ସ୍ୱ ଆସନ ବିରାଟ ପ୍ରସ୍ତରଖଣ୍ଡ ଉପରେ ଆସୀନ ହୋଇ ସଭା ମଧ୍ୟକୁ ଚିନ୍ତାଯୁକ୍ତ ଆଖିରେ କିଛି ସମୟ କେବଳ ଦୃଷ୍ଟି ନିକ୍ଷେପ କଲେ । ତା' ପରେ ହଠାତ୍ ମୁହଁରେ ଅଶ୍ୱସ୍ତିର ଭଙ୍ଗୀ ଦେଖାଇ ଉତ୍‌କ୍ଷିପ୍ତ ଅବସ୍ଥାରେ ଆରମ୍ଭ କଲେ-

"ପ୍ରଜାବର୍ଗ, ମୋ ଦେହର ପର୍ଯ୍ୟାପ୍ତ ସାମର୍ଥ୍ୟ ଓ ମୋ ମାଂସପେଶୀର ପ୍ରଚଣ୍ଡ ଶକ୍ତି ଉପରେ ତୁମମାନଙ୍କର କାହାରି ଅବିଶ୍ୱାସ ଆସିଛି କି ?"

ତତ୍‌କ୍ଷଣାତ୍ ସଭା ମଧ୍ୟରୁ ସମବେତ ସ୍ୱର ଗୁଞ୍ଜରି ଉଠିଲା-"ନା, ମହାରାଜ !"

ସମ୍ରାଟ ଗର୍ଜି ଉଠିଲେ- "ତେବେ କାହିଁକି ଏ ପୃଥିବୀ ମଣିଷର ପୃଥିବୀ ବୋଲି ମଣିଷ ଆବହମାନ କାଳରୁ ଘୋଷଣା କରି ଆସୁଛି ? ମୋର ସାମ୍ରାଜ୍ୟରେ ବ୍ୟାଘ୍ର, ହସ୍ତୀ, ଭଲ୍ଲୁକ, ସର୍ପ ପ୍ରଭୃତି ଶକ୍ତିଧର ମହାରଥୀମାନେ ଉପସ୍ଥିତ ଥାଉଁ ଥାଉଁ କାହିଁକି ଆଜି କ୍ଷୁଦ୍ର ବପୁ ହୀନବୀର୍ଯ୍ୟ ମଣିଷ ଏ ପୃଥିବୀର ସର୍ବମୟକର୍ତ୍ତା ରୂପେ ତାର ଆଧିପତ୍ୟ ଜାହିର କରୁଛି ? କାହିଁକି ଆମକୁ ଇତର ବୋଲି ସାବ୍ୟସ୍ତ କରି ତାର ଅଯୌକ୍ତିକ ପ୍ରଭୁତ୍ୱ ଆମ ଉପରେ ବିସ୍ତାର କରୁଛି । ମୁଁ ବହୁଦିନ ହେଲା ଏ ଚିନ୍ତାରେ ଘାରି ହୋଇ ସାଂଘାତିକ ଭାବରେ ଅସୁସ୍ଥ ହେଇ ପଡ଼ିଛି । ମୋ ଭିତରର ହୀନମନ୍ୟତା ମତେ ସବୁବେଳେ ବିକ୍ଷତ ଓ ବିବ୍ରତ କରୁଛି । ମଣିଷ ନିଶ୍ଚିତ ରୂପେ ଏକ ଦୁର୍ବଳ ଶ୍ରେଣୀର ଜୀବ ହେଲେ ମଧ୍ୟ ଆମର ଯେ ଅବଶ୍ୟ ପ୍ରଭୁ ଭାଜନ, ଏହାର ରହସ୍ୟ କ'ଣ ? ଆମଠାରୁ ମଣିଷ କାହିଁକି ଶ୍ରେଷ୍ଠ ? ମୁଁ ଆଜି ତୁମମାନଙ୍କୁ ଆହ୍ୱାନ କରୁଛି । ତୁମେମାନେ ଆଲୋଚନା କର ଏବଂ ମଣିଷ କାହିଁକି ଆମ ଉପର ସ୍ତରର ପ୍ରାଣୀ ବୋଲି ଗର୍ବ କରୁଛି, ତାର ରହସ୍ୟ ଉଦ୍‌ଘାଟନ କର । ମୁଁ ମଣିଷର ଗୁପ୍ତ କୌଶଳ ସମ୍ବନ୍ଧରେ ଅବହିତ ହେଲେ ନିଜକୁ ପ୍ରସ୍ତୁତ କରି ମଣିଷର ପ୍ରଭୁ ହୋଇ ପାରିବି ଏବଂ ତୁମମାନଙ୍କର ପଦମର୍ଯ୍ୟାଦା ଆପେ ଆପେ ପୁଷ୍କଳ ହୋଇ ଉଠିବ । ପ୍ରଥମେ ସ୍ୱତନ୍ତ୍ର ଭାବରେ ନିମନ୍ତ୍ରିତ ସବାସଦ୍‌ବର୍ଗ ସେମାନଙ୍କର ଅଭିମତ ପ୍ରଦାନ କରନ୍ତୁ । ତା'ପରେ ଅନ୍ୟମାନେ ମଧ୍ୟ ନିଜର ସ୍ୱାଧୀନ ମତ ଉପସ୍ଥାପିତ କରିପାରିବେ । ମୁଁ ସର୍ବପ୍ରଥମେ ଆମର ସର୍ବବୃହତ୍ ମହାବପୁବାନ ହସ୍ତୀ ମହାରଥୀଙ୍କୁ ତାଙ୍କର ଅଭିମତ ଦେବାକୁ ଆହ୍ୱାନ ଦେଉଛି ।

ସଭାସ୍ଥଳ କିଛିକ୍ଷଣ ନିସ୍ତବ୍ଧ ହୋଇ ଉଠିଲା । ଚିନ୍ତାର ଉଚ୍ଚ ହୁଙ୍କା ଭିତରେ ସମବେତ ପଶୁକୁଳ ସମାଧିସ୍ଥ ହୋଇପଡ଼ିଲେ ।

କିଛି ସମୟ ପରେ ହାତୀ ଧୀରେ ଧୀରେ ନିଜର ଶୁଣ୍ଢ ଟେକି ଓ ଆସ୍ତେ ଆସ୍ତେ ଆପଣାର କୁଲାକାନ ହଲାଇ ଚିନ୍ତା କରୁ କରୁ କହିଲା- "ସମ୍ମାନ୍ନନୀୟ ପଶୁରାଜ, ମୁଁ ଭାବୁଛି ମଣିଷ ମୋଠାରୁ ଶ୍ରେଷ୍ଠ, କାରଣ ସେ ମୋଠାରୁ ଟିକିଏ ଅଧିକ ବୋକା । ମୋ ଉପରେ ବସି ସେ ନିଜକୁ ଡେଙ୍ଗା ବୋଲି ଗର୍ବ କରେ ।"

ତା' ପରେ ବାଘ ହଠାତ୍ କହି ପକାଇଲା- "ମଣିଷ ମୋଠାରୁ ବଡ଼, କାରଣ ମୋଠାରୁ ସେ ଅଧିକ ହିଂସ୍ର । ମୁଁ ମୋ ଶିକାର ଉପରକୁ ଲମ୍ଫ ମାରି ତାକୁ ଅକ୍ତିଆର କରେ, କିନ୍ତୁ ସେ ତାର ଶିକାର ବେକରେ ଫୁଲମାଳ ପିନ୍ଧାଇ ତାକୁ ହତ୍ୟାକରେ ।

ଭାଲୁ ଅଳ୍ପ ଅଳ୍ପ ଘୁମୁରି ଛେପ ଛାଟି ଛାଟି ଅଭିମତ ଦେଲା ଯେ, ତା ଭଳି ପ୍ରତ୍ୟକ୍ଷ ସଂଘର୍ଷ ପ୍ରାୟ କମ୍ କରି ତାଠାରୁ ଅଧିକ କୌଶଳରେ ମଣିଷ ତା'ର ବିଷାକ୍ତ ଜିଭରେ ଚାଟି ଚାଟି ତାର ପ୍ରତିଦ୍ୱନ୍ଦୀକୁ ସେ ମୃତ୍ୟୁ ଦିଏ । ତେଣୁ ତାଠାରୁ ମଣିଷ ବଡ଼ ।

ସାପ ଉଠିପଡ଼ି ନିଜର ଫଣା ନୂଆଇଁ ସମ୍ରାଟଙ୍କୁ ଅଭିବାଦନ ଜଣାଇ କହିଲା- "ମହାରାଜ, ମଣିଷ ମୋଠାରୁ ଶ୍ରେଷ୍ଠ, କାରଣ ସେ ମୋଠାରୁ ଅଧିକ ଭୟଙ୍କର । ସେମାନେ ମଧ୍ୟ ନିଜ ନିଜ ଭିତରେ କାମୁଡ଼ା କାମୁଡ଼ି ଲାଗିଲାବେଳେ, (କେତେଥର ମୁଁ ଆଖି ଟେକି ଶୁଣିଛି) ସେମାନେ ତାଙ୍କର କଣ ନୀତିକଥାର ଶ୍ଳୋକ ବୟାନ କରନ୍ତି ଯେ ସର୍ପାତ୍ କ୍ରୁରତରଃ ଖଳଃ ।"

ମୂଷା ଅତି ନମ୍ର ଅଥଚ ଆତ୍ମବିଶ୍ୱାସର ନିଶ୍ଚିତ ସ୍ୱର ଧରି କହି ଉଠିଲା- "ମଣିମା, ମଣିଷ ମୋଠୁ ବଡ଼, ଯେଣୁ ସେ ମୋଠାରୁ ମଧ୍ୟ ଆହୁରି ଚତୁରତା ସହିତ ଚୋରି କରିପାରେ ।"

ଶାଗୁଣା ତାର ମୁଣ୍ଡର ଫୁଲ ଥୋଳାକୁ ନଚେଇ ନଚେଇ ବୁଝାଇ ଦେଲା, ଯେ ମଣିଷ ତାଠାରୁ ଅଧିକ ଶକ୍ତିଶାଳୀ । କାହିଁକିନା, ପଚାମାଂସକୁ ତାଠାରୁ ସେ ଅଧିକ ଦୂରରୁ ଦେଖିପାରେ । କେବଳ ସେତିକି ନୁହେଁ, ସଢ଼ା ପଦାର୍ଥକୁ ତାଠାରୁ ଅଧିକ ଆନନ୍ଦରେ ଖାଇବାକୁ ମଣିଷ ବେଶ୍ ଅଭ୍ୟସ୍ତ ହୋଇ ପାରିଛି ।

ଶେଷରେ ଦରବାରର ବୟସ୍କ ଶିଆଳ ଆପଣା ସ୍ଥାନରୁ ଉଠି ପ୍ରଥମେ ଭୂମିରେ ସାତଥର ଦଣ୍ଡ ପ୍ରଣାମ କରି ସାରିବା ପରେ ପଛ ଗୋଡ଼ରେ ଆଣ୍ଠେଇ ପଡ଼ି ଆଗ ଗୋଡ଼ରେ କାନମୂଳ କୁଣ୍ଡାଇ କୁଣ୍ଡାଇ କଥା ଆରମ୍ଭ କରିବା ଆଗରୁ ମନେ ପଡ଼ିଯିବାରୁ ପୁଣି ଥରେ ସମ୍ରାଟଙ୍କୁ ପ୍ରଣାମ କଲା । କଥାକୁ ପାକୁଳାଇ ପାକୁଳାଇ ଲାଳ ସଟକାକୁ ଭିତରକୁ ଟାଣି ନେଲାବେଳେ ତା କଥାର ସୁଅ ଅଟକି ଅଟକି ଯାଉଥିଲା । ସେ ସିଂହ ମୁହଁକୁ ଅନୁନୟ ଭଙ୍ଗୀରେ ଚାହିଁ, ସଭାସ୍ଥଳୀ ଆଡ଼େ ସାମାନ୍ୟ ଆଖିମିଟିକା ମାରି, ଚାପି ଚାପି ଆରମ୍ଭ କଲା- "ବୀରାଧି ବୀରବର ମହାମହିମ ସମ୍ରାଟ, ମୁଁ ଭାବୁଛି, ମାନେ ମୁଁ ପୂରା ଭାବି ସାରିନି, ଅର୍ଥାତ୍ ମୁଁ ଭାବୁଛି, ଏବଂ କହୁଛି । ମଣିଷ ମୋର ଗୁରୁ ସ୍ଥାନୀୟ । କାରଣ ମୋ ପ୍ରଭୁଙ୍କ ଅନୁଗ୍ରହ ପାଇଁ ମୁଁ ଯେତିକି ତୋଷାମଦ କରେ, ମଣିଷ ତା ପ୍ରଭୁଙ୍କଠାରୁ କାର୍ଯ୍ୟ ହାସଲ ଲାଗି ଢେର ବେଶୀ ତାଙ୍କର ପଦଲେହନ କରେ । ଆଉ ମୁଁ ବର୍ତ୍ତମାନ ଯଥେଷ୍ଟ ଭାବି ସାରି କହୁଛି, ମନୁଷ୍ୟ ପଶୁଠାରୁ ନିଶ୍ଚିତ ରୂପେ ବଡ଼ । ଯେହେତୁ ତାର ଆମପରି ଲାଙ୍ଗୁଡ଼ ନାହିଁ ଏବଂ ମୋର ଶେଷ ଭାବିବା ଭାବି ସାରିଲା ପରେ ମୋ ତଣ୍ଟି ସଲ ସଲ ହେବାରୁ ମୁଁ ଓକାଳି ନ ପକାଇ ରହି ପାରୁନି ଯେ ଆମ ଲାଙ୍ଗୁଡ଼ ଗୁଡ଼ାକ ଆମ ବୁଦ୍ଧିକୁ ସବୁ ପଛଆଡୁ ଟାଣି ନେଉଛି । ତେଣୁ ଆଗକୁ ବୁଦ୍ଧି ପଠାଇ ମଣିଷ ସାଙ୍ଗରେ ଆମେ ଟଲ୍‌କର ଦେବା ବେଳକୁ ଲାଙ୍ଗୁଡ଼ ପାଖ ଓଜନ ଥିବାରୁ ଆମେ ପଛକୁ ଓଲଟି ପଡୁଛୁ ।

ହଠାତ୍ ପୋଖରୀ ପାଖରେ ଥିବା ଗଛ ଉପରେ ହସର ବେଲୁନ୍ ଗୋଟେ ଫୁଟିଗଲା । କିଏ ହସିଲା ବୋଲି ସମସ୍ତେ ଉପରକୁ ଚାହିଁଲେ । ଗଛ ସନ୍ଧିରେ ଜଣେ ମଣିଷ

ବସି ସେମାନଙ୍କ ଆଡ଼କୁ ଚାହିଁ ମୁରୁମୁରୁ ହସୁଛି । ହଠାତ୍ ସିଂହ ମହାବାହୁ ଆସନରୁ ଲମ୍ଫ ଦେଇ ଅତିଷ୍ଠ ହୋଇ ଉଠିଲେ । ଦୁବୃର୍ତ୍ତ ଓ ଦୁର୍ବିନୀତ ମଣିଷକୁ ଧରି ଆଣିବାକୁ ପଶୁ ସୈନ୍ୟଙ୍କୁ ଆଦେଶ ଦେଇ ଗର୍ଜିବାକୁ ଲାଗିଲେ । ପଶୁବାହିନୀର ରାକ୍ଷସ କୋଳାହଳରେ ଜଙ୍ଗଲର ଗଛଲତା ଦୋହଲିବାକୁ ଲାଗିଲେ । ପଶୁମାନଙ୍କ ଆକ୍ରମଣ ପୂର୍ବରୁ ମଣିଷଟି ଗଛରୁ ଓହ୍ଲାଇ ଆସି ସମ୍ରାଟ ସିଂହକୁ ପ୍ରଣାମ କରି ଯୋଡ଼ହସ୍ତରେ ଠିଆ ହେଲା । ସମ୍ରାଟଙ୍କ ନିର୍ଦ୍ଦେଶରେ ସମସ୍ତେ ନିଜ ନିଜ ସ୍ଥାନରେ ବସି ପଡ଼ିଲେ । କେବଳ ବାଘ ଓ ଭାଲୁ ମଣିଷର ଦୁଇ କଡ଼ରେ ସତର୍କ ପ୍ରହରୀ ରୂପେ ଠିଆ ହୋଇ ରହିଲେ । ସଭାସ୍ଥଳ ପୁଣି ନିସ୍ତବ୍ଧ ହେଲା ।

ସିଂହ ଅତି ଦର୍ପରେ ଗର୍ଜନ କରି କହିଲା, "ଆରେ ରେ ନୀଚ, ନଗଣ୍ୟ ମଣିଷ, ତୁ ନିଜକୁ ଅତି ଶକ୍ତିଶାଳୀ ବୋଲି ଗର୍ବ କରୁ । ଆଜି ମୋର ମହାରଥୀମାନଙ୍କ ସହିତ ତୋତେ ମଲ୍ଲ ଯୁଦ୍ଧ କରିବାକୁ ହେବ । ଏ ମୁକ୍ତ ଦରବାର ଆଗରେ ତୋତେ ତୋ ଶକ୍ତିର ପରିଚୟ ଆଜି ଦେବାକୁହିଁ ପଡ଼ିବ । ମୋର ପଶୁବାହିନୀର ଦାନ୍ତ, ନଖ, ଶିଙ୍ଗ, ଲାଙ୍ଗୁଡ଼ ଆଗରେ କେଉଁ ଅସ୍ତ୍ର ନେଇ ତୁ ଯୁଦ୍ଧ କରିବୁ ମୁଁ ଦେଖିବାକୁ ଚାହେଁ ।"

ମଣିଷଟି ଅଳ୍ପ ହସି ପଶୁରାଜଙ୍କୁ ପୁଣି ସମ୍ମାନ ଦେଖାଇଲା ଏବଂ ଆରମ୍ଭ କଲା– "ମୋର ମୃତ୍ୟୁ ପାଇଁ ମୁଁ ଟିକିଏ ବି ଦୁଃଖିତ ନୁହେଁ । କିନ୍ତୁ ମତେ ମାରି ଆପଣମାନେ ନିଶ୍ଚୟ ନିଜର ଭୁଲ୍ ବୁଝିବେ ଓ ଅନୁତାପ କରିବେ, ସେହି କଥା ଭାବି ମୁଁ ଅସ୍ୱସ୍ତି ଅନୁଭବ କରୁଛି । କିଏ ଆପଣମାନଙ୍କୁ କହିଲା, ପଶୁମାନେ ମଣିଷଠାରୁ ନିକୃଷ୍ଟ ? ପଶୁ ସମାଜ ପ୍ରକୃତି ମାତାର ପ୍ରଥମ ଓ ପୂର୍ଣ୍ଣ ସଂସ୍କରଣ । ଆପଣମାନେ ଆମ୍ଭମାନଙ୍କର ପୂର୍ବପୁରୁଷ ବୋଲି ଆମେ ଆପଣମାନଙ୍କୁ ଦେବତାର ସମ୍ମାନ ଦେଉଁ । ପଶୁ ପୂଜାରୁ ମଣିଷ ଦେବତାର ପୂଜା ଆରମ୍ଭ କରିଛି । ତେଣୁ ଆପଣମାନେ ଆମ୍ଭମାନଙ୍କର ଆଦି ଦେବତା । ହେ ପଶୁରାଜ, ଆପଣ ସର୍ବଶକ୍ତି ମୟ । ସୃଷ୍ଟି-ସ୍ଥିତି-ସଂହାର-କାରିଣୀ ବନ୍ଦନୀୟା ମା'ଦୁର୍ଗାଙ୍କର ସାରଥି ଓ ପଥ ପ୍ରଦର୍ଶକ । ଗଜରାଜ ମହାଲକ୍ଷ୍ମୀଙ୍କର ବାହନ ରୂପେ ମଣିଷର ପୂଜା ନେଉଛନ୍ତି । ଭଲ୍ଲୁକ ଜାମ୍ବବାନ ଶ୍ରୀରାମଙ୍କ ମନ୍ତ୍ରୀ ରୂପେ ଆଜି ମଧ୍ୟ ମଣିଷର ନମସ୍ୟ । ସର୍ପମାନେ ଦେବ ଦେବ ମହାଦେବଙ୍କର ଅଙ୍ଗ ଭୂଷଣ । ଏପରିକି ଆପଣଙ୍କର ମୂଷିକ ଶ୍ରୀ ଗଣେଶଙ୍କ ପାର୍ଶ୍ୱଚର ରୂପେ ପୂଜିତ ହେଉଛନ୍ତି । ତେତିଶ କୋଟି ଦେବତା ଆପଣମାନଙ୍କ ସାହାଯ୍ୟ ବ୍ୟତିରକେ ନିଜର କାର୍ଯ୍ୟ ପରିଚାଳନା କରିବାକୁ ସଂପୂର୍ଣ୍ଣ ଅକ୍ଷମ ଅଟନ୍ତି । ଆପଣମାନେ ସମସ୍ତେ ମଣିଷ ଆଗରେ ଦେବତା ସ୍ତରରେ ସଂସ୍ଥାପିତ ଏବଂ ମଣିଷର ଆରାଧ୍ୟ ଅଟନ୍ତି ।"

ହଠାତ୍ ପଶୁରାଜଙ୍କର ମୁହଁରୁ କ୍ରୋଧର ଅବଲେପ ଅପସରି ଗଲା ଏବଂ ସମସ୍ତେ ଆସ୍ତେ ଆସ୍ତେ ଶାନ୍ତହୋଇ ଉଠିଲେ ।

ସିଂହ ଶାନ୍ତ କଣ୍ଠରେ କହିଲେ– "ତୁମର କଥା ଶୁଣି ଆମେ ସମସ୍ତେ ପ୍ରୀତ ହେଲୁ । ତଥାପି ତୁମେ ପଶୁଠାରୁ ଶ୍ରେଷ୍ଠ ବୋଲି ଆମେ ଅନୁଭବ କରୁଛୁଁ । ତୁମେ ଯେଉଁ ରହସ୍ୟ ଧରି ପଶୁଠାରୁ ଭିନ୍ନ ଏବଂ ଉନ୍ନତ, ଆମ ଆଗରେ ନିଷ୍କପଟ ହୃଦୟରେ ପ୍ରକାଶ କର । ମୁଁ ଶପଥ କରି କହୁଛି, ତୁମର ଜୀବନହାନିର ଆଶଙ୍କା ଆଉ ନାହିଁ । କେବଳ ଆମର କୌତୁହଳକୁ

ପ୍ରଶମିତ କରିବାକୁ ତୁମେ ଉପଯୁକ୍ତ ଉତ୍ତର ଦେଇ ମଣିଷର ବୈଶିଷ୍ଟ୍ୟ ସମ୍ବନ୍ଧରେ ଆମକୁ ସୂଚନା ଦେଲେ ତୁମକୁ ମୁକ୍ତି ଦିଆଯିବ।"

ସମସ୍ତେ ବହୁ ଆଗ୍ରହ ନେଇ ମଣିଷ ଆଡ଼େ ଚାହିଁ ରହିଲେ। ମଣିଷଟି ହଠାତ୍ ଅନୁନୟ ସ୍ୱରରେ କହିଲା-"ସମ୍ରାଟ, ମୁଁ ଜଣେ ନିଅଣ୍ଟ ବୁଦ୍ଧିଆ ଲୋକ। ମୁଁ ପ୍ରାୟ ସମସ୍ତ ଗୁଢ଼ ପ୍ରଶ୍ନର ସମାଧାନ ପାଇଁ ମୋର ସ୍ତ୍ରୀ ଉପରେ ନିର୍ଭର କରେଁ। ମୋର ବିଶ୍ୱାସ, ମୋର ସ୍ତ୍ରୀ ଆପଣଙ୍କ ପ୍ରଶ୍ନର ସଠିକ ଉତ୍ତର ଦେଇପାରିବ।"

ତା'ର ପରେ ସମସ୍ତ ପଶୁଗଣ ମଣିଷର ଘରକୁ ଯିବାକୁ ବାହାରି ପଡ଼ିଲେ। ମଣିଷଟି ହାତ ଯୋଡ଼ି କହିଲା-"ସମସ୍ତଙ୍କ ଭିତରେ ଭଲମନ୍ଦ ରହିଛି। ଦୁଷ୍ଟ ମଣିଷମାନେ କେବଳ ଆପଣମାନଙ୍କୁ ଭୟକରି ବେଳେ ବେଳେ ଆପଣମାନଙ୍କ ସାଙ୍ଗରେ ସଂଘର୍ଷ କରନ୍ତି। ଆପଣମାନେ ମଣିଷର ଅଞ୍ଚଳକୁ ଦଳବଳ ନେଇ ଗଲେ ଅଯଥା ଅଶାନ୍ତି ଦେଖାଦେଇ ପାରେ। ମୁଁ ଭାବୁଛି, ମୂଷିକକୁ ମୋ ସାଙ୍ଗରେ ଆପଣ ପଠାନ୍ତୁ। ସେ ବିନା ବିପଦରେ ଆମ ଘରେ ଅତିଥି ହୋଇ ପାରିବେ। ମୁଁ ମୋ ସ୍ତ୍ରୀଙ୍କଠାରୁ ଉତ୍ତର ଆଣି ତାଙ୍କ ହାତରେ ଆପଣମାନଙ୍କ ପାଖକୁ, ଉଦ୍ଦିଷ୍ଟ ବାର୍ତ୍ତା ପଠାଇଦେବି।" ମଣିଷର ଏ ପ୍ରକାର ଅନୁରୋଧକୁ ପଶୁରାଜ ଯୁକ୍ତିଯୁକ୍ତି ବୋଲି ଗ୍ରହଣ କଲେ ଏବଂ ଅନ୍ୟମାନେ ମଧ୍ୟ ଏ ପ୍ରସ୍ତାବକୁ ପସନ୍ଦ କରି ଅନୁମୋଦନ କଲେ।

ତା'ପରେ ମଣିଷ ଓ ମୂଷା ଦୁହେଁ ମଣିଷଟିର ଘର ଆଡ଼େ ଚାଲିଲେ। ରାସ୍ତାରେ ବହୁ ମଧୁର ଆଳାପ ଦ୍ୱାରା ମଣିଷଟି ମୂଷାକୁ ମୁଗ୍ଧ କରିଥିଲା। ମଣିଷ ପ୍ରତି ମୂଷାର ମନରେ କିଛି ସମ୍ମାନ ମଧ୍ୟ ଏହା ଭିତରେ ଗଚ୍ଛିତ ହୋଇ ଯାଇଥିଲା। ମଣିଷଟି ଦୁଆରେ ପହଞ୍ଚିଲା କ୍ଷଣି ମୂଷା କହିଲା- "ଆପଣ ଶୀଘ୍ର ମାଆଙ୍କୁ ପଚାରି ଉତ୍ତର ମତେ ବଣାଇ ଦିଅନ୍ତୁ। ତେଣେ ସମ୍ରାଟ ସମେତ ଅନ୍ୟ ସମସ୍ତେ ଉତ୍ସୁକ ଆଖିରେ ଅନାଇ ରହିଥିବେ।"

ମଣିଷ ବିଦ୍ରୁପର ହସ ହସି କହିଲା-"ଆରେ ବୋକା ମୂଷା, ମାଆଙ୍କର ପରାମର୍ଶର କିଛି ଆବଶ୍ୟକତା ନାହିଁ। ମୁଁ ନିଜେ ତୁମ୍ଭମାନଙ୍କ ବାପ ହିସାବରେ କହୁଛି; ତୁ ତୋ ମୂର୍ଖ ଶିରୋମଣି ସମ୍ରାଟ ଓ ତାଙ୍କର ମହାମୂଢ଼ ପ୍ରଜାମାନଙ୍କୁ କହିଦେବୁ ମଣିଷ ସବୁବେଳେ ପଶୁଠାରୁ ବଡ଼ ହେବାର କାରଣ ହେଉଛି, ପଶୁମାନଙ୍କର ସ୍ୱରୂପର କୌଣସି ସଦର ମଫସଲ ନାହିଁ। ସେମାନେ ଭିତରେ ପଶୁ ଓ ବାହାରେ ପଶୁ। କିନ୍ତୁ ମଣିଷ ଭିତରେ ଯାହା, ବାହାରେ ତାହା ନୁହେଁ। ଅର୍ଥାତ୍ ମଣିଷ ବାହାରେ ଯେମିତି ଦିଶେ ତା' ଭିତରର ରଙ୍ଗ ସେମିତି ନୁହେଁ।"

•••

# ଅଶୁଭ ପୁତ୍ରର କାହାଣୀ

ସେଦିନ ସେ ଛୋଟ ପେଚା ଛୁଆଟି ପହିଲୁ କରି ଆଖି ଖୋଲିଲା । ଗଛର ଅନ୍ଧାରିଆ ଖୋଲ ଭିତରେ ସେ ଆଖି ଫିଟାଇ ପ୍ରଥମେ ଦେଖିଲା ଅନ୍ଧାର, ଚାରିଆଡେ ଖାଲି ନିଘଞ୍ଚ ଅନ୍ଧାର । ମାଆ ତାର ତା ଉପରେ ଡେଣା ଘୋଡାଇ ବସିଥିଲା । ତଳେ କୁଟା କାଠିର ଟାଆଁସିଆ ଶେଯ ଉପରେ କଅଁଳ ହାତଗୋଡ଼ ଦିଖଣ୍ଡ ତାର ଥୋଇ ଥାଇ ସେ କେତେ କଥା ସପନ ଦେଖି ଯାଉଥିଲା । ଗଛର ଉପର ଡାଳରେ କାଆ କାଆ ହୋଇ କଣ ଗୁଡ଼ାଏ ଖୁବ୍ ଜୋର୍‌ରେ ପାଟି କମ୍ପେଇଲେ । ତା ମାଆର ଡେଣା କାହିଁକି ଚହଲି ଉଠିଲା । ସେ ପକ୍ଷିଗୁଡ଼ାକୁ ଟିକିଏ ଭଲକରି ଚହଲାଇ ଦେଇ ତାକୁ ପେଟ ଆଡ଼କୁ ଜାକି ଆଣିଲା । ତାକୁ ଟିକିଏ ଆରାମ ଲାଗିଲା । ସେ ଚୁଁ ଚୁଁ ହେଇ ହସି ପକାଇଲା । ମାଆ ତା କୁନି ଥଣ୍ଟରେ ଥଣ୍ଟ ଘଷି ତାକୁ ତୁନି ହେଇ ରହିବାକୁ ଚୁପ୍ ଚୁପ୍ କହିଲା । ମାଆ ଇମିତି କାହିଁକି କରୁଛି, ସେ ବୁଝି ପାରିଲା ନି । ମାଆ ଯେତେବେଳେ କହୁଛି, ଖାଲି ଚୁପ୍ ହେଇଗଲା । ମାଆର ନରମ ପର ଭିତରେ ଉଷୁମ ଟାଣି ଟାଣି ତା ଦେହରୁ ଚମଡ଼ାର ଭାଙ୍ଗସବୁ ଫିଟି ଫିଟି ଯାଉଥିଲା । ତାକୁ ଭାରି ହାଲୁକା ଲାଗୁଥିଲା । ସେ ଭାବୁଥିଲା, ସେ ଠିଆ ହୋଇ ପଡ଼ିବ । କାଠିକୁଟାର ବିଛଣା ଭିତରେ ସେ ତାର ଗୋଡ଼ ଟିକିଏ ସଳଖାଇ ଦେଲା । ମାଆ ବି ତା ଉପରୁ କାହିଁକି ଟିକିଏ ଘୁଞ୍ଚି ବସିଲା । ତା ଟିକି ଟିକି ଗୋଡ଼ ଉପରେ ଥଣ୍ଟ ଢୁକେଇ ଢୁକେଇ ମାଆ ତାର ଗୋଡ଼କୁ ସିଧା କରିଦେଲା । ସେ ଉପରକୁ ଟିକିଏ ଚାହିଁଲା । ଅନ୍ଧାର କାହିଁକି କମ୍ ଜଣାଗଲା । ସେ ଆଖି ବୁଜି ପକାଇଲା । ଟିକିଏ ମାଆ ଆଡ଼କୁ ଚାହିଁ ପୁଣି ଉପରକୁ ଚାହିଁଲା । ମା ତାର ଯେମିତି ତା ମନର କଥା ବୁଝି ପାରିଲା । ତା କୁନି ଚେପା ନାକରେ ନିଜର ନାକକୁ ଲଦି ହସି ହସି କହିଲା- "ଧନ ମୋର କେତେ ହୁସିଆର ହୋଇ ଗଲାଣି । ହେଉ, ଟିକିଏ ଆଉ ଥୟ ଧର । ତୋ ଡେଣାରେ ଭଲ କରି ପର ବାହାରି ଯାଉ । ମୁଁ ତତେ ଉଡ଼ିବା ଶିଖାଇ ଦେବି । ଡେଣା ଭାଙ୍ଗିବାର ବାଗବରଗ ସବୁ ବତେଇ ଦେବି । ତୁ ସରଗରେ ବୁଲି ବୁଲି ନୂଆ ନୂଆ ଜିନିଷ ଦେଖିବୁ । ତୁ ଏଠି ସିନା ଅନ୍ଧାରରେ ପଡ଼ିଛୁ । ଦୁନିଆକୁ ବାହାରି ଗଲେ ସେଠି ଆଉ

ସବୁବେଳେ ଅନ୍ଧାର ନଥିବ। ସରଗରେ ତେଫା ତୋଫା ଗୋଲ ଜହ୍ନର ଆଲୁଅ ବୋହି ପଡୁଥିବ। କୁନି କୁନି ତାରା ସବୁ ଆଖି ମିଟିମିଟି କରି ତତେ ଗେହ୍ଲା କରିବେ। ମୁଁ ତତେ ଭଲ ଭଲ ଦରବ ତୋ ସାଙ୍ଗରେ ଘୁରି ଘୁରି ଚିହ୍ନେଇ ଦେବି। ତୁ ଖାଲି ବଡ଼ ହୋଇ ଯା। ତୋ ଦିହରେ ଟିକିଏ ତାକତ ଆସୁ।" ମାଆ ତାର ଖୋଲ କଡ଼ରୁ ଖଣ୍ଡେ ପାକଲା ପିଜୁଳି ଆଣି ତା ଥଣ୍ଟ ଭିତରେ ଗେଞ୍ଜି ଦେଲା। ସେ ଆସ୍ତେ ଆସ୍ତେ ଥଣ୍ଟ ଚଳାଇ ଢୋକି ନେଲା। ଆଃ, କି ମିଠା ! ସେ ଭାବିନେଲା, ସେ ଦୁନିଆ ଦେଖି ନେବ। ଦୁନିଆଟା ଭାରି ମିଠା।

ଗଛ ତଳେ କଣ ଗୁଡ଼ାଏ ଗୋଟାକ ପରେ ଗୋଟାଏ ହୁକେ ହୋ ହୋଇ ଦୌଡ଼ା ଦୌଡ଼ି କଲେ। ମାଆ ପେଟତଳେ ଶୋଇ ଶୋଇ ତାକୁ ବି ଟିକିଏ ନିଦ ଆସି ଯାଇଥିଲା। ସେ ସପନ ଦେଖି ଯାଉଥିଲା। ଖାଲି ଦୁନିଆର ସପନ। ଚାରିଆଡ଼ ଖାଲି ମିଠା ପିଜୁଳି ଖଣ୍ଡ ଖଣ୍ଡ ହୋଇ ବିଛେଇ ହୋଇ ପଡ଼ିଛି। ସରଗରୁ ଗୋଲ ଜହ୍ନ ତଳକୁ ଓହ୍ଲେଇ ଆସୁଛି। ବିଲକୁଲ ଅନ୍ଧାର ନାହିଁ। ହସରେ ତା ଥଣ୍ଟ ଖୋଲିଗଲା। ଗଛ ତଳୁ ପାଟି ଶୁଣି ସେ ଉଠି ପଡ଼ିଲା। ଚାରିଆଡ଼େ ଖାଲି କିଟି କିଟି ଅନ୍ଧାର। ତା ମନଟା ଖଟା ହୋଇଗଲା। ସାଙ୍ଗେ ସାଙ୍ଗେ ଆଲୁଅର ସପନ ଦେଖି ଉଠିଛି। ମାଆ ତାର ଖୋଲା ମୁହଁରେ ବସି ଡେଣା ଖୋଲି ଝାଡ଼ି ହେଉଥିଲା। ସେ ଡାକ ଛାଡ଼ିଲା– "ମା, ମୁଁ ଆଜି ଦୁନିଆ ଦେଖିବି। ଜହ୍ନ ସାଥିରେ ଖେଳିବାକୁ ମୁଁ ଆଜି ନିଶ୍ଚେ ବାହାରି ଯିବି।" ମାଆ ତାର ଭିତରକୁ ପଶି ଆସି ତାକୁ ପେଟ ଆଡ଼କୁ ଟାଣିନେଲା। ସେ ମାଆର ପେଟତଳୁ ଖସରିଗଲା। ତାକୁ ଅନ୍ଧାର ମୋଟେ ଭଲ ଲାଗୁନଥିଲା। ମାଆ ହସି ହସି କହିଲା– "ଦୁନିଆକୁ ତୁ ଆସିଛୁ। ତୋ ଦୁନିଆକୁ ତତେ ଯିବାକୁ କିଏ ମନା କରୁଛି। ଦୁନିଆକୁ ବଡ଼ ହୋଇ, ଖୁବ୍ ବଳୁଆ ହୋଇ ନଗଲେ ଦୁନିଆ ତତେ ଠକାଇ ଦେବ। ଟିକିଏ ଥୟ ଧର। ଆଉ କେତେଟା ଦିନ। ମୁଁ ବଳେ ବଳେ ତତେ ନେଇଯିବି। ତୁ ଏଇଠି ଶୋଇଥା। ମୁଁ ଯାଉଛି, ତୋ ଲାଗି ନୂଆ ନୂଆ ଜିନିଷ ଆଣିବି। ତୁ ଜମା ପାଟି କରିବୁନି।" ମାଆ ତାର ଥଣ୍ଟରେ ଟିକିଏ ଯାକୁ ଖୁମ୍ପି ଦେଇ ଗେହ୍ଲାକରି ବସାରୁ ବାହାରି ପଡ଼ିଲା। ବସା ଦୁଆରେ ଟିକିଏ ଅଟକି ଯାଇଁ ତାକୁ ପୁଣି ଚାହିଁଲା। ମାଆ ଚାଲିଗଲା। ସେ ଆଖି ବୁଜିଲା। ଆଖି ବୁଜି ବୁଜି ଦେଖିଲା ଦୁନିଆ ଉପରେ ଆଲୁଅ ବିଛେଇ ହୋଇ ପଡ଼ିଛି। ଆଲୁଅର ଦୁନିଆ ତାକୁ ପିଜୁଳି ଦେଖି ଯିବାପାଇଁ ଇସାରା ଦେଉଛି। ତା ଆଖି ଲାଗି ଲାଗି ଆସୁଥିଲା। ସେ ଦେଖୁଥିଲା ଡେଣାରେ ତାର ତା ମାଆଠୁ ବି ବେଶୀ ପର ବାହାରି ପଡ଼ିଛି। ସେ ଜହ୍ନ ଦେହରେ ପକ୍ଷ ଘଷି ଘଷି ହସି ହସି ଉଡ଼ିଉଡ଼ି ଯାଉଛି।

ତା ଗୋଡ଼ ଏଣିକି ଶକ୍ତ ହେଇ ଗଲାଣି। ସେ ଠିଆ ହୋଇ ପାରୁଛି। ଡେଣାରେ ତାର ପରସବୁ ଆସ୍ତେ ଆସ୍ତେ ଅଙ୍କୁରି ଆସୁଛି। ଦୁନିଆ କଥା ଭାବି ଭାବି ମନ ତାର ବାଇଆ ହେଇ ପଡ଼ିଲାଣି। ତା ଦୁନିଆରେ ଜହ୍ନ ଆଲୁଅ, ପାକଲା ପିଜୁଳି ଖାଲି ଖେଦି ହେଇ ଯାଉଛି। ଏଣିକି ସେ ସବୁବେଳେ ଖାଲି ବିକଳ ହେଉଛି। ମାଆ ସାଙ୍ଗରେ ଲଗାଉଛି। ସେ ବଡ଼ ହେଲାଣି, ସେ ଦୁନିଆ ଦେଖିଯିବ।

ମାଆ ସେଦିନ ତା ଅଝଟ ପଣିଆ ଦେଖି ପ୍ରଥମ କରି ତାକୁ ଖୋଲ ମୁହଁକୁ ଆଣିଲା । ସରଗର ଚାନ୍ଦକୁ ଥଣ୍ଟ ବଢ଼େଇ ଚିହ୍ନେଇ ଦେଲା । ଆଖି ତାର ଝଲସି ଉଠିଲା । ଆଃ, କି ସୁନ୍ଦର ! ସେ କେତେ ଅନ୍ଧାରିଆ ଜାଗାରେ ପଡ଼ି ରହିଥିଲା । ମାଆ ଡେଣା ସାଙ୍ଗରେ ଡେଣା ମେଲାଇ ଟିକିଏ ଟିକିଏ ଖଣ୍ଡିଉଡ଼ା ଦେଲା । ସେ ଏ ଡାଳରୁ ସେ ଡାଳକୁ ଗଲା । ପକ୍ଷି ତାର ଘୋଳେଇ ହେଇ ପଡ଼ିଲା । ଗଛର ସବା ଉପର ଡାଳକୁ ଗୋଟାଏ ଦମରେ ଉଠିଗଲା । ସେ ଜହ୍ନଆଡ଼େ ଚାହିଁକି ସେଠି ବସି ରହିଲା । ଡେଣାରୁ ତାର ପରାଣ ଆପେ ଆପେ କମି ଆସୁଥିଲା । ଜହ୍ନ ଦେହରୁ ଝିପି ଝିପି ହେଇ ଆଲୁଅ ବିଞ୍ଛି ହେଇ ପଡୁଛି । ସେ ଭାବିଲା ଥଣ୍ଟ ମେଲା କରି ସେଥିରୁ ମେଞ୍ଚାଏ ପିଇଯିବ । ମାଆ ଆସି ଏତିକିବେଳକୁ ତା ପାଖରେ ପହଞ୍ଚିଗଲା । ତାକୁ ବୁଝେଇ ସୁଝେଇ ଖୋଲ ଭିତରକୁ ନେଇଗଲା ।

ଥରେ ଦିନବେଳେ ମାଆ ତାର ଟିକିଏ ଘୁମେଇ ପଡ଼ିଥିଲା । ସେ ଆସ୍ତେ ଆସ୍ତେ ଖୋଲ ପାର ହେଇ ଚାଲି ଆସିଲା । ଇସ୍, ବାହାରେ କେତେ ଆଲୁଅ । ସେଦିନଠୁଁ ଆଜିର ଜହ୍ନଟା ଖୁବ୍ ବଡ଼ ହେଇ ଦାଉ ଦାଉ ହେଇ ଜଳୁଛି । ସେ ଚାହିଁଲା । ଆଖି ତାର ପୋଡ଼ି ଉଠିଲା । ବାପରେ ବାପ କେତେ ଆଲୁଅ । ଉପର ଡ଼ାଳରୁ ବଣିଛୁଆ ଦୁଇଟା ବାହାରି ଆସି ଏ ଡାଳରୁ ସେ ଡାଳକୁ କୁଦି କୁଦି ଯାଉଛନ୍ତି । ମାଆ ସାଙ୍ଗରେ ତାଳ ପକାଇ ଗୀତ ବୋଲୁଥାନ୍ତି । ୟା ମନ ଭାରି ଖରାପ ହେଇଗଲା । ତା ମାଆଟା ବଣି ମାଆ ଭଳି ସେତେ ଭଲ ନୁହେଁ । ତାକୁତ କାହିଁ ଇମିତିକା ବଡ଼ ଜହ୍ନ ତଳେ ଗୀତ ବୋଲେଇ ଶିଖେଇନି । ସେ ଗୀତ ବୋଲି ବୋଲି ବଣିଛୁଆ ପାଖକୁ ଗଲା । ବଣିଛୁଆ ଦିଟା ଡରିଗଲେ । ସେମାନେ ପାଟି କରି ଉଠିଲେ । ତାଙ୍କ ମାଆ ଆସି ୟାକୁ ଖୁମ୍ପି ପକାଇଲା । ୟା ପାଟି ଶୁଣି କୁଆଟେ କା' କା' ଡାକ ଛାଡ଼ି ଛୁଟି ଆସିଲା । ପେଚା ମାଆର ନିଦ ଭାଙ୍ଗିଗଲା । ସେ ବାହାରକୁ ଧାଇଁଆସି ଆପଣା ଖୋଲ ଭିତରକୁ ୟାକୁ ଟାଣି ନେଇଗଲା । ମାଆ ଉପରେ ପେଚାଛୁଆ ବେଜାଏ ରାଗିଗଲା । ତା ମାଆ ସବୁ ଭଣ୍ଡୁର କରିଦେଲା । ରାଗରେ ସେ ମାଆକୁ ଦିଟାରି କାମୁଡ଼ା ବି ଦେଲା । ଖୋଲ ପାରହେଇ ପଳାଇବାକୁ ବସିଲା । ତାକୁ କାହିଁକି ଏମିତିକା ବଡ଼ ଜହ୍ନ ଦେଖେଇ ଦେଇନି ବୋଲି ମାଆକୁ ଦାଲକିବାକୁ ବସିଲା । ମାଆ ତାକୁ ବୋଧ ଦେଇ ବୁଝାଉ ବୁଝାଉ କାନ୍ଦିକରି କହିଲା–"ତୁନି ହୋ'ରେ ପୁଅ, ପାଟି କିଳି ଦେ । ସେ ଜହ୍ନ ନୁହେଁରେ ବାପ, ସେ ହେଉଛି ସୂର୍ଯ୍ୟ । ଆମ ଦୁନିଆରେ ସୂର୍ଯ୍ୟ ନାହିଁ । ଆମେ ଅନ୍ଧାରରେ ରହିବା । ନହେଲେ ଆମେ ମରିବାରେ ବାପ ।"

ସେ ମାଆର କଥାରେ ରାଗିଗଲା । କାହିଁକି ସେ ସୂର୍ଯ୍ୟର ଦୁନିଆକୁ ଯିବନି ? କାହିଁକି ସେ ଆଲୋକର ରାଜ୍ୟରେ ନବୁଲିବ ? କିଏ ସେ ଇମିତି ତାଙ୍କୁ ହଇରାଣ କରିବାକୁ ନିୟମ କରିଛି ? ସେ ତମ ତମ ହେଇ ଆଗେଇ ଯାଉଥିଲା । ମାଆ ତାକୁ ପେଟ ତଳକୁ ଟାଣି ଆଣିଲା । ମାଆ ପେଟରୁ କେତେଟା ପର ସେ ରାଗରେ ଥଣ୍ଟମାରି ଉପାଡ଼ି ପକାଇଲା ।

ମାଆ ତାର ଖାଲି କାନ୍ଦିଲା । ମାଆ କାନ୍ଦୁଛି, ସେ ଫେରି ଆସିଲା । ବସା ସେପାଖରେ କୁଆଗୁଡ଼ାକ ପାଟି କମ୍ପାଉଥାନ୍ତି । କାହିଁକି ସେ ପୋଡ଼ାମୁହିଁ ସୂର୍ଯ୍ୟକଥା କହି ପୁଅର ମୁଣ୍ଡକୁ ବିଗାଡ଼ି ଦେଲା ବୋଲି ପେଚା ମା ହାଇପି ସାଇପି ହେଉଥିଲା । "ଆମେ ଅନ୍ଧାରର ବାସିନ୍ଦା । ଆମେ ଅଶୁଭର ସମ୍ପ୍ରଦାୟ । ଆମେ ଦୁନିଆର ଅଭିଶାପ । ଆମେ ଆଲୁଅ ଖୋଜିଲେ ମରିବା । ଆଲୁଅର ରାଜୁତିରେ ଆମକୁ ଶିକାର କରିବା ପାଇଁ ଆଲୁଅ ପୁଅମାନେ ଟାକିକି ବସିଛନ୍ତି ।" ମାଆ ତାର କହୁଁ କହୁଁ ଖାଲି କାନ୍ଦିଲା । ମାଆକୁ ବୋଧ ଦେଉଁ ଦେଉଁ ସେ କହିଲା-"ମାଆ ତୁ ଟିକିଏ ଥୟ ଧର । ମୁଁ ବଡ଼ ହୁଏଁ ଆଲୁଅ ରାଜ୍ୟକୁ ମୁଁ ତତେ ଅଲବତ୍ ନେଇଯିବି । ମୁଁ ସବୁ ଶତ୍ରୁକୁ ମା ନିପାତ କରିଦେବି ।

ସେଦିନ ମାଆ ପୁଅ ଦିଜଣ ଆମ୍ବ ଡାଳରେ ବସିଥାନ୍ତି । ଆକାଶରେ ଜହ୍ନ ନଥାଏ । ପେଚା ଛୁଆକୁ ଭଲ ଲାଗୁ ନଥାଏ । ହଠାତ୍ ପାଖଘରର ଫାଙ୍କା ଦେଇ ଆଲୁଅ ଦିଶିଲା । ପେଚା ଛୁଆର ମନ ଉଲସି ଉଠିଲା । ସେ ପାଟି ଖୋଲି ଗୀତ ପଦେ ଧଇଲା । ଘର ଭିତରୁ କଡ଼ାକଡ଼ା କଥାରେ କିଏ ଗାଳି ଦେଲା- "ଉଠୁଛୁନା ପୋଡ଼ାମୁହାଁ ସେଠୁ । ପିଠା ଖଡ଼ିକା ପଚେଇ ଦାଗି ଦେବି ଯେ ବୁଝିବୁ । ଦୂର୍ ଦୂର୍, ତତେ ଝାଡ଼ାବାନ୍ତି ଖାଉ ।" ପେଚା ମାଆ ଛୁଆ ମୁହଁରେ ଥଣ୍ଟ ଲଗାଇ ଆଉ ପାଟି ନ କରିବାକୁ କହିଲା । ପେଚାଛୁଆ ରାଗିଗଲା । ବାଃ, ଆଲୁଅକୁ ଘର ଭିତରେ ଆପଣା ସମ୍ପତ୍ତି ଭଳି କାରବାର କରିବେ । ଆଲୁଅକୁ ଦେଖି ଆମେ ଟିକିଏ ଖୁସି ହେଲେ ଗାଳି ଶୁଣିବୁ ? ନା, ତା ହେବନି । ସେ ଝରକା ଭିତରେ ପଶି ଆଲୁଅକୁ ଛଡ଼ାଇ ଆଣିବାକୁ ବାହାରିଲା । ମାଆ କାନ୍ଦି ବୋବେଇ ତାକୁ ସେଦିନ ଫେରାଇ ଆଣିଲା ।

ସଞ୍ଜପରେ ଘରୁ ବାହାରିବା ଆଗରୁ ସେ ତାର ଡେଣା ଦୁଇଟାକୁ ଭଲକରି ସେଦିନ ଦେଖିନେଲା । ତାର ସବୁ ପର ଉଠି ଯାଇଛି । ଗୋଡ଼କୁ ସିଧାକରି ଦୁଇଚାରିଥର ନାଚିଗଲା । ବେଶ୍ ଶକ୍ତ ଅଛି । ଥଣ୍ଟକୁ ଗଛ ଖୋଲ ଦେହରେ ବାଡ଼େଇ ଦେଲା । ଖୁବ୍ ଟାଣ ହୋଇ ଗଲାଣି । ସେ ଉଡ଼ି ଚାଲିଗଲା । ରାତିର ଅନ୍ଧାର ଭିତରେ ଗୋଟାଏ ଖୋଲରେ ବସି ରହିଲା । ସେ ଆଉ ଘରକୁ ଫେରିବନି । ସେ ସୂର୍ଯ୍ୟର ଦେଶରେ ବୁଲିବ । ସେ ଆଲୁଅକୁ ଦଖଲ କରିବ । ସେ ଶତ୍ରୁର ମୁହାଁମୁହିଁ ହେଇ ମୁକାବିଲା କରିବ ।

ରାତି ପାହି ଆସିଲା । ଦିଗ୍‌ବଳୟର ତଳଆଡୁ ନାଲଖରାର ପିଚକାରୀ ଉପରକୁ ଉଠିଲା । ସୂର୍ଯ୍ୟ ରାଜ୍ୟରେ ଆଲୋକର ଏହି ପ୍ରଥମ ପ୍ରବେଶକୁ ସେ କେବେ ଦେଖିନଥିଲା । ସେ ଆଖି ଖୋଲି ଆଲୁଅର ଏ କଳସବୁଡ଼ା ଉତ୍ସବକୁ ନିଜକୁ ଭୁଲି ଦେଖିବାକୁ ଲାଗିଲା । ଶହଶହ ଚଢ଼େଇ ଗୀତ ସାଙ୍ଗରେ ଡେଣାର ଭାଙ୍ଗ ପକାଇ ଉଡ଼ିଗଲେ । ତାରି ଶହ ଶହ ଜାତି ଭାଇ ଆଲୁଅରେ ବୁଲି ବୁଲି ଜୀବନର ସ୍ୱାଦୁ ଚାଖିବେ, ଆଉ ସେ ଡରିମରି ଅନ୍ଧାର ଭିତରେ ସଢ଼ି ସଢ଼ି ମରିବ ? ନା, ତା ମନ ଦମ୍ଭରେ ପୂରି ଉଠିଲା । ସୂର୍ଯ୍ୟ ଆସ୍ତେ ଆସ୍ତେ ଉପରକୁ

ଉପରକୁ ଉଠୁଥିଲେ । ଦିନରେ ଆଲୁଅ ବେଶୀ ବେଶୀ ଜଳି ଉଠୁଥିଲା । ଏଡ଼େ ବଡ଼, ଏତେ ସୁନ୍ଦର ଆଲୁଅର ପୃଥିବୀରେ ତା ପାଇଁ କଣ ଟିକିଏ ଜାଗା ନାହିଁ ? ନା, ସେ ଆଜି ମନପୂରା ମଉଜ କରିବ । ସେ ଆଜି ଦୁନିଆକୁ ଜଣାଇଦେବ, ସେ ମଧ୍ୟ ଆଲୋକର ପୁଅ । ତାର ମଧ୍ୟ ଏ ରାଜ୍ୟରେ ଦାବି ଅଛି ।

ସେ ମନଇଛା ଚାରିଆଡ଼େ ବୁଲିବାକୁ ଲାଗିଲା । ଆଖି ମେଲେଇ ଦୁନିଆର ହରେକ ଦରବ ଟିକିନିଖି କରି ଦେଖିଲା । ହଠାତ୍ ପଛଆଡ଼ୁ କିଏ ତାକୁ ଆକ୍ରମଣ କଲା । ସେ ବୁଲି ପଡ଼ିଲା । ମାଆ ସେଦିନ ତାକୁ ତାର ଶତ୍ରୁ ବୋଲି ଚିହ୍ନେଇ ଦେଇଥିଲା । ଏଇମାନେ ତାଙ୍କଠୁଁ ଆଲୁଅକୁ ଛଡ଼ାଇ ନେଇଛନ୍ତି । ସେ ମଧ୍ୟ ଥଣ୍ଟକୁ ସଜାଡ଼ି ନେଇ କୁଆଟା ଉପରେ ଚଢ଼ାଉ ଆରମ୍ଭ କରିଦେଲା । କୁଆଟା ପ୍ରତିରୋଧ କରୁଁ କରୁଁ ତା ଜାତି ଭାଇଙ୍କୁ ଡାକ ଛାଡ଼ିଲା । ଦଳ ଦଳ କୁଆ କା' କା'ର ରେରେକାର ଦେଇ ମାଡ଼ି ଆସିଲେ । ଏଡ଼େ ବଡ଼ ମଜଭୁତ୍ ଦଳ ଆଗରେ ସେ ରହି ପାରିବନି ବୋଲି ବୁଝି ପାରିଲା । ଆଗରେ ଦିଶୁଥିବା କୋଠା ଘର ଆଡ଼କୁ ଖୁବ୍ ଜୋର୍‌ରେ ଡେଣା ହଲାଇ ଛୁଟିଗଲା । କାନ୍ଥର ଗୋଟାଏ ଛୋଟ ଗଳାବାଟ ଦେଇ ସେ ଗଳିଗଲା । ଘରର ଭିତର ପାଖ ପର୍ଯ୍ୟନ୍ତ ସେ ପଶିଗଲା । ବାହାରେ ଏଣେ କୁଆଗୁଡ଼ାକ ଭେଳା ଭେଳା ହେଉଥାନ୍ତି । ସେ ଟିକିଏ ନିଶ୍ଚିନ୍ତରେ ସେଠି ବସିଲା । ଟିକିଏ ସୁବିଧା ମିଳୁ, ଶତ୍ରୁର ଦଳ ଭାଙ୍ଗିଯାଉ, ସେ ବି ତାର ପ୍ରତିଶୋଧ ନେଇ ଜାଣେ । ସେ ଆଜି ଆଲୁଅ ରାଜ୍ୟରୁ ତାର ପାଉଣାକୁ ଆଦାୟ କରିବ । ସେ ଅନ୍ଧାରର ଅଭିଶାପ ନୁହେଁ । ସେ ଆଲୁଅର ସନ୍ତାନ । ସେ ଆଜି ଆଲୁଅକୁ ମନମାନା ନିଶ୍ଚୟ ଉପଭୋଗ କରିବ ।

କୋଠାଘର ଭିତରେ ପଲଙ୍କର ମୋଟା ଗଦି ଉପରେ ଧନବୀର ଧୀରୁମଲ୍ଲ ଶୋଇଛନ୍ତି । ତୁହା ତୁହା ହେଇ ଜରର କମ୍ପ ତାଙ୍କ ଉପରକୁ ମାଡ଼ି ଆସୁଛି । ଧିରୁମଲ୍ଲ ବ୍ୟସ୍ତ ହୋଇ ପଡୁଛନ୍ତି । ଜର୍‌ର ବିନ୍ଧା ଛିଟିକା ଭିତରେ ପିଟି ଛାଟି ହୋଇ ସେ ମଝିରେ ମଝିରେ ଚିହ୍ନାର ଛାଡୁଛନ୍ତି । "ଦେଖ, ସୋରିଷ ତେଲରେ ଯେମିତି ଅଣୀଭାଗ ଅଗରା ମିଶେ । ହଁ, ମଦନା ବାରିକ ଉପରେ ଆଉ ଯେପରି ପାଞ୍ଚ ନମ୍ବର କେଶ୍ ଦାୟର ହେବ । ଶଳାର ଭଉଣୀ ଚନ୍ଦ୍ରମା ଭାରି ସତୀ ଦେଖେଇ ହେଉଛି । ମୁଁ ଟିକିଏ ଶରଧାରେ ହାତ ପକେଇ ଦେଲି ବୋଲି ଶାଳୀ ମାଇକିନା ମତେ ମାରିବାକୁ ଉଠୁଥିଲା । ଶୁଭୁଛି, କୋଡିଏ ଜଣଯାଏଁ ଗୁଣ୍ଡା ପଠାଇ ପ୍ରିୟ ମିଶ୍ର ବିଲ୍‌ରୁ ପାକଲା ଧାନ କାଟି ଆଣ । ପଇସାକୁ ପରବାୟ ରଖନି । ପାଠ ଦିଅକ୍ଷର ପଢ଼ିଛି ବୋଲି ଶଳା ମତେ ନମସ୍କାର କରିବନି । ଏଠି ଆସି ଶୁଣ, ଶହେ ଭରି ଚୋରା ଅଫିମ ଦେବ ବୋଲି ସେ କଲିକତିଆ ବଙ୍ଗାଳୀ କହି ଯାଇଛି । ତାକୁ ଟିକିଏ ଆଖି ରଖିଥିବ ।"

ଏଇମାନେ ଆଲୋକ ରାଜ୍ୟର ନାମଯାଦା ଲୋକ । ଯାଙ୍କ ପାଇଁ ସୂର୍ଯ୍ୟ ତାଙ୍କର ସବୁଦିନେ ଆଲୋକ ଦିଅନ୍ତି । ପେଚାଛୁଆ ଆଖି ଖୋଲି ଭଲ କରି ଚାହିଁଲା । ହଠାତ୍ ଧୀରୁମଲ୍ଲଙ୍କ ପାଖରୁ ଆଲୋକ ରାଜ୍ୟର ସଚ୍ଚୋଟ ସଚ୍ଚାକର୍ମୀଙ୍କ ଆଖି ପେଚା ଛୁଆ ଉପରେ ପଡ଼ିଲା ।

"ଅଶୁଭ, ଅଶୁଭ, ମହା ବିତ୍‌ପାତ ଯୋଗ । ଘରେ ଉଲ୍ଲୁକ ବସିଲା । ମାଲିକ ବେମାର ପଡ଼ିଛନ୍ତି ।" କର୍ମୀ ବ୍ୟସ୍ତ ହୋଇପଡ଼ି ପାଟି କମ୍ପାଇଲେ । ଗୋଟାଏ ଲମ୍ବା ବାଉଁଶ ଆଣି ବିଚରା ପେଚା ଛୁଆକୁ ଖେଞ୍ଚି ଖେଞ୍ଚି ତଡ଼ି ଦିଆଗଲା । ଦୁଇଟିଯାକ ଡେଣା ତାର ଇଖମ ହୋଇଗଲା । ସେ କଷ୍ଟେମଷ୍ଟେ ଡେଣା ଟେକି କୋଠା ଉପରେ ବସିଲା । ଗଛ ଉପରୁ କେତେଟା କୁଆ ଆସି ଚଢ଼ାଉ ଆରମ୍ଭ କରିଦେଲେ । କୁଆଙ୍କ ପାଟି ଶୁଣି ଜଣେ ଚାକର କୋଠା ଉପରକୁ ଯାଇଁ ବାଡ଼ିରେ ପେଚା ଛୁଆଟି ଉପରେ ପାହାର ଲଗେଇଲା । ଛୁଆଟି ତଳକୁ ଗଡ଼ି ପଡ଼ିଲା । ପେଚାଟା ବସିଛି ବୋଲି କୋଠା ଉପରେ ମୋଆଏ କୁଟା ଜାଳି ହଳଦୀ ପାଣିରେ ଲିଭାଇ ଦିଆଗଲା । ଯାହା ହେଉ ଅରିଷ୍ଟ କଟିଗଲା ।

କୁଆପଲ ଅଶକ୍ତ ପେଚାଛୁଆ ଉପରେ ଆକ୍ରମଣ ଚଳେଇ ଦେଲେ । ପେଚାଛୁଆଟିର ଡେଣା ମୂଳରୁ ଥୋଳା ଥୋଳା ରକତ ଥୋପି ପଡୁଥିଲା । ସେ ଥରେ ଉପରକୁ ଛାହିଁଲା । ସୂର୍ଯ୍ୟ ଖୁବ୍ ଉପରେ ଯଥେଷ୍ଟ ଆଲୁଅ ଦେଉଛନ୍ତି । ଖୁବ୍ କଷ୍ଟରେ ଉଠିପଡ଼ି ସେ ତା ବସା ଆଡ଼କୁ ମୁହାଁଇଲା । ଖୋଲଯାଏଁ ଉଠି ପାରିଲାନି । ଗଛମୂଳେ ପଡ଼ିଗଲା । ମାଆଟାର ପୁଅ ଆସିନି ବୋଲି କାଲୁବାଲୁ ହୋଇ ଚାହିଁ ବସିଥାଏ । କଣ କରିବ ? ଦିନଟାରେ ଛୁଆଟା କେଉଁଠି ଆଶ୍ରା ନେବ ? ମାଆର ମନଟା ଏଣୁ ତେଣୁ ଭାବି ଭାବି ଗୋଳେଇ ଘାଣ୍ଟି ହେଉଥାଏ । ପୁଅର ପାଟି ଶୁଣି ସେ ଗଛ ମୂଳକୁ ଧାଇଁ ଆସିଲା । ପୁଅକୁ ରକ୍ତ ସୁଡୁସୁଡୁ ଦେଖି ପାଟିରୁ ତାର କଥା ବାହାରିଲାନି । ପେଚା ଛୁଆଟି ଥରେ ଉପରକୁ ଚାହିଁଲା । ଗଛ ଉପରେ ବଣିଛୁଆ ସବୁ ଡେଇଁ ଡେଇଁ ଗୀତ ବୋଲୁଥିଲେ । ସୂର୍ଯ୍ୟ ଆକାଶ ଦିହରୁ ଆଲୁଅ ପୃଥିବୀ ଉପରକୁ ଖସାଇ ପକାଉଥିଲେ ।

ପେଚାଛୁଆ ମାଆକୁ କତିକି ଡାକି ମାଆ ଗୋଡ଼ରେ ମୁଣ୍ଡ ଗଡ଼େଇ ଗଡ଼େଇ କହିଲା-"ମାଆ, ତୁ କାନ୍ଦନା । ମୋର ଆଉ ଭାଇ ହେଲେ ତାଙ୍କୁ କହିବୁ, ତାଙ୍କ ଭାଇ ଆଲୋକ ରାଜ୍ୟ ଜୟ କରିବାକୁ ଯାଇଁ ବୀରପରି ମରିଛି ।"

ପେଚାଛୁଆଟି ସବୁଦିନ ପାଇଁ ଆଖି ବୁଜିଦେଲା ।

ସୂର୍ଯ୍ୟ ତାଙ୍କ ଦୁନିଆ ଉପରେ ବେଶୀ ବେଶୀ ଆଲୁଅ କୁଢ଼େଇ ଦେଉଥିଲେ ।

•••

# କଇଁ

ମୋ ଖୁଡ଼ୀ କଥା କେଉଁଠି ପଡ଼ିଲା ତ ତା କଇଁ  କଥା ଯେମିତି ହେଉ ସେଠି ଉଠିବ। ସେ ବି କାହା ସାଙ୍ଗରେ କଥା ଆରମ୍ଭ କଲାତ ଶେଷକୁ ଯାଇଁ କଇଁ ପାଖରେ ହାବୁଡ଼ିଯିବ। କଇଁର ଗୁଣ ପଣ ଦି'ପଦ ବଖାଣିବା ପାଇଁ କିଛି କାମ ନ ଥିଲେ ବି ଦାଣ୍ଡରେ ଘାଟରେ ଗାଁ ଝିଅ ବୋହୂଙ୍କୁ ଅଟକାଇ ସେ ଗପ ଆରମ୍ଭ କରେ। ଖୁଡ଼ୀର ପରିଚୟ ଆଖ ପାଖ ପାଞ୍ଚଖଣ୍ଡ ଗାଁରେ ହେଉଛି କଇଁବୋଉ, କଇଁ ସୁଆଗୀ, କଇଁଫୁଲେଇ, ଶେଷକୁ ବି ଖାଲି କଇଁ। ଅବଶ୍ୟ ଏ ସବୁ ଡାକ ନାଁ କୁହାଯାଏ ତାର ଅଜାଣତରେ। ଭୁଲରେ କାହା ପାଟିରୁ ଏମିତିକା ନାଁଟେ ବାହାରି ପଡ଼ିଲାତ ସେ ଦୁନିଆ ଉଚ୍ଛନ୍ନ କରିବ। କଇଁ କଥା ଶୁଣିବା ପାଇଁ ସମସ୍ତେ ଅନିଚ୍ଛା ପ୍ରକାଶ କଲେ ବି, ସେ ଇଚ୍ଛା କରି ତା କଥା କହିବ। ଯାହାକୁ ସେ ହାବୁଡ଼ିବ, ସେ ଖାଲି ଶ୍ରୋତା ହୋଇ ରହିବ। ବକ୍ତା ହେବାକୁ ସେ ସୁବିଧା ଦେବ ନି। ସେଥିରେ ବି ବିପଦ ଅଛି। ଯଦି କିଏ କିଛି କହିବ ସେ କେବଳ କଇଁକୁ ପ୍ରଶଂସା କରି କହିବ। ଏ ପ୍ରଶଂସାକୁ ବେଳେବେଳେ ଖୁଡ଼ୀ ମୋର ହିଂସା ବୋଲି ଧରିନିଏ। ତାର ଧାରଣା କଇଁକୁ କେହି ସହି ପାରୁ ନାହାଁନ୍ତି। ଯଦି ସେମିତିକା ଧାରଣାଟା ହଠାତ୍ ମୁଣ୍ଡରେ ଭୁକିଗଲାତ, ଆଉ ରକ୍ଷାରକ୍ଷଣ ନାହିଁ। ସଁପି କାଟି ଧୂଳି ଉଡ଼େଇବ।

ଏଇ ସ୍ୱନାମଧନ୍ୟା କଇଁ ହେଉଛି ମୋ ଖୁଡ଼ୀର ଗାଈ। କଇଁ ଯେତେବେଳେ ଆମ ଗୁହାଳରେ ଜନ୍ମହେଲା, ଖୁଡ଼ୀ ଆମ ଘରକୁ ବୁଲି ଆସିଥିଲା। ଧୋବ ସରସର ଛୋଟ ବାଛୁରୀଟିକୁ ଦେଖି ସେ ଭାବିଚିନ୍ତି ନାଁ ଦେଇଯାଇଥିଲା କଇଁ। ଆସ୍ତେ ଆସ୍ତେ ଖୁଡ଼ୀର ଆମଘରକୁ ଆସିବାର ଏକମାତ୍ର କାରଣ ହେଲା କୁନି କଅଁଳା ବାଛୁରୀଟି। କଇଁକୁ କେନ୍ଦ୍ରକରି ସେ ଆମ ଘରେ ମୁରବିପଣିଆ ଜାହିର କରିବାକୁ ଲାଗିଲା। ଶେଷକୁ ଝଗଡ଼ା ବି ରୀତିମତ ଆରମ୍ଭ କଲା। ବାଛୁରୀ ଲାଙ୍ଗୁଡ଼କୁ ଟାଣି ଛୁଆ କିଏ ରୁମଦିଟା ଉପାଡ଼ି ଦେଇଛି ତ  ତାର ଆଉ ରକ୍ଷା ନାହିଁ। ତା ପେଜରେ କିଏ ପାଣି ପୂରାଇ ଦେଲା ତ ଖୁଡ଼ୀ କାନ ମୋଡ଼ି ଚାପଡ଼ ବଜାଇବାକୁ ତିଆର। କଇଁ ଆଉ ମୋ ଖୁଡ଼ୀ ଭିତରେ ଏମିତି ଏକ ସ୍ନେହର ଝଡ଼ ସୃଷ୍ଟି ହେଲା ଯେ, ଶେଷକୁ ଖୁଡ଼ୀକୁ ବାଛୁରୀଟା ଦେବାକୁ ବାଧ୍ୟ ହେଲୁ। ନ ହେଲେ ରକ୍ଷା ମିଳିନଥାନ୍ତା।

ଖୁଡ଼ୀ ଘରେ କଇଁ ପହଞ୍ଚିବା ପରେ ତା ଜୀବନରେ ଗୋଟିଏ ନୂଆ କାହାଣୀ ସୃଷ୍ଟି ହେଲା। ଯେଉଁ କାହାଣୀକୁ ନେଇ ଆମେ ସମସ୍ତେ ହସିବାରେ ବ୍ୟସ୍ତ ରହିଲୁଁ। ଖୁଡ଼ୀ ବି

କାହାଣୀର ପରିସର ବଢ଼ାଇ ଆମକୁ ହସାଇବାରେ ଲାଗିପଡ଼ିଲା । ଜୀବନରେ ବାଉନଟି ବର୍ଷ କଟିଗଲା ପରେ ଏଇ କଇଁଟି ତାକୁ ମାଆ ହେବାର ପ୍ରଥମ ସୁଯୋଗ ଦେଲା । ବର୍ଷ ବର୍ଷ ଧରି ନିଷ୍କ୍ରିୟ କଳ୍ପନା ତାର ଅତି ଅଦ୍ଭୁତ ରୂପନେଲା ଏ କଇଁଟିକୁ ପାଇ । ସେ କଇଁ ଲାଗି ପାଗଳୀ ହୋଇଗଲା । ମୁଁ ବହୁତ ମାଆ ଦେଖିଛି, ମାଆର ବାତ୍ସଲ୍ୟ ବି ଦେଖିଛି ; କିନ୍ତୁ ମାଆ ନ ହୋଇ ମାଆ ବୋଲି ଭାବି ପାଗଳୀ ହେବା ଦେଖି ନଥିଲି ।

ଖୁଡ଼ୀ ଥିଲା ମୋର ଭାରି ଅଳସେଇ । ପିଲାପିଚିକା କେହି କେବେ କୋଡ଼କୁ ଆସି ନ ଥିଲେ । ଓଳିଏ ରାନ୍ଧିଲେ ଦିଦିନ ବି ଚଳି ଯାଉଥିଲା । ଏଣିକି ତା ଘରେ ଦୁଇଓଳି ଚୁଲି ଲାଗିଲା । ଗରମ ପେଜ ଟୋପେ ନ ପିଇଲେ ଛୁଆଟାର ବପୁ ହେବ ନି । କଇଁବି ପକ୍କା ଅଫିମଖୋର ଭଳି ତହତହ ପେଜ ଟୋପେ ନହେଲେ ନ ପିଏ । କୁଣ୍ଡା ତିନିପୁର ଢିଙ୍କିରେ କୁଟା ହୋଇ କପଡ଼ା ଛଣା ହେବ । କଅଁଳ ତଣ୍ଟିରେ କାଳେ ଲାଗିଗଲେ ଛୁଆଟା ହଇରାଣ ହେବ । ଗରମ ଭାତ ଚକଟା ହୋଇ ପାଣି ପଶିବ । ଜହ୍ନିକି ଭେଣ୍ଡି କଷିଟାଏ ପୋଡ଼ାହୋଇ ଚଟଣି ହେବ । ଖୁଡ଼ୀର ନିଜ ଖାଇବା କଂସାରେ ଆଗେ କଇଁ ଖାଇସାରିଲେ ସେ ଯାଇଁ ଖାଇ ବସିବ । ଖାଉ ଖାଉ ବି ମନ ମାନିବ ନାହିଁ । ତରକାରୀରୁ ପରିବା ଖଣ୍ଡେ ପାଟିରେ ଚୋଟମି କଇଁ ପାଟିରେ ଦେଉଥିବ । ଖିଆଲ ପଶିଛିତ ଆପଣା ଭାତ ସେମିତି ଅଧାହୋଇ ଥୁଆ ହୋଇଥିବ । ଆଗେ ଘଣ୍ଟେ ବାଛୁରୀକୁ ଧରି ଗେହ୍ଲା କରିବ । ଦିନକୁ ଦଶଥର କଇଁ ଆଖିରେ ଲେଞ୍ଜେରା ଲାଗିଛି ବୋଲି କାନିରେ ପୋଛି ଦେଉଥିବ । ମୁହଁରେ ମୁହଁ ଲଗାଇ ଚୁମା ଖାଇବ । ବେଳେବେଳେ କଇଁବି ମୁହଁରେ ଦୁଇଚାରି ଡିହ ପକାଏ । ଖୁଡ଼ୀ ରାଗିଯାଇ ଚହଟେ ଚାପଡ଼େ ପକାଇଲାତ ଦିନମାନ ବସି କାନ୍ଦିବ । କାମ କରୁ କରୁ ଦୌଡ଼ିଯାଇଁ ମାରିବା ଜାଗାକୁ ଆଉଁସି ଦେଉଥିବ । ବଥା ଖାଇଯିବ ବୋଲି ରାତି ତିସିରା ପହର ଯାଏ ବସି ଘଷିବ । ତେଲ ମାଲିସ କରୁ କରୁ କେତେ ରକମ ବୁଝେଇ ସୁଝେଇ କହୁଥିବ- 'ଅଝଟ କରୁଛୁ-ମାଡ଼ ଖାଉଛୁ- ଅମାନିଆ ହେଉଛୁ' । ମଝିରେ ମଝିରେ ନିଜକୁ ଦମେ ଗାଳିଦେବ- 'ମୁଁ ପୋଡ଼ାମୁହିଁ ବା ନ କଲି କଣ । -ଅଜ୍ଞାନ ଛୁଆଟା ବିଟାଳ ହେଲା ବୋଲି ପିଟି ପକାଇଲି ।' ସୁଉଁ ସୁଉଁ ହୋଇ କାନ୍ଦି ପକାଇବ । ଆମ ଘରକୁ ଖୁଡ଼ୀ ଯେଉଁଦିନ ନ ଆସିଲା, ବୁଝିବୁ ଯେ ଖୁଡ଼ୀର ଆଜି କଇଁ ସାଙ୍ଗରେ ପଦେ ଅଧେ କିଛି ହୋଇଛି ।

ନାଲି ସୂତାରେ କୁନି କୁନି ଘୁଙ୍ଗୁର ଗୁନ୍ଥି କଇଁ ବେକରେ ଖୁଡ଼ୀ ବାନ୍ଧି ଦେଇଛି । ଦିନକୁ ଦଶଥର ସେ ଫିଟା ହେବ । ବେକ ଉପରେ ଦାଗ ବସିଗଲା କି ନାହିଁ ପରଖ କରାଯିବ । ବୁଢ଼ୀ ପଛରେ କୁଦି କୁଦି କଇଁ ଚାଲିଥିବ । ବୁଢ଼ୀ ପାଣି ଆଣୁ ଆଣୁ ବାଟରେ ଅଟକି ଯାଇଁ ଆଖିରେ ପଲକ ପଡ଼ିବ ନି, ଅନାଇ ଥିବତ ଅନାଇଥିବ, ଗାଁ ଗଣ୍ଡାରେ କିଏ ହସି ଉଠିଲେ ତାର ଚେତା ପଶିବ । ଦମେ ବରବର ହୋଇ ଘରକୁ ଆସିବ । କଇଁକୁ ଧରି ଦିଲଣ୍ଡା ଛେପ ପକାଇବ । ତୁଳସୀ ଚଉଁରାମୂଳରୁ ମାଟି ଆଣି ତା ମୁଣ୍ଡରେ ଟିପା ଦେବ । ଟିପାଟା ବଙ୍କା ହେଇଗଲା ବୋଲି ଲିଭାଇ ପକାଉଥିବ । କେତେ ଲୋକଙ୍କର କେତେ ରକମ ଆଖି । ସେ

ମାଆ ହେଲା ବୋଲି କଣ ହେଲା ? କଥାରେ କହନ୍ତି ମାଆ କଞ୍ଚା ଡାଆଁଣୀ ।

ସକାଳୁ ଆଗେ ସେବାପୂଜା ସାରି ବୁଢ଼ୀ ଗଙ୍ଗାମୃତ୍ତିକା ପାଣି, ଗଦପତର କଇଁ ପାଟିରେ ଦେବ । ଆମ ଘରକୁ ଆସିଲାତ ସବୁଦିନେ ତାର ମନଦୁଃଖ, ଛୁଆଟା ଜମ୍ମା ଉଧୋଉନି । କିଛି ପାଟିକି ନେଉନି । ଦିନକୁ ଦିନ ଶୁଖି କଣ୍ଟା ହେଲାଣି । ଆଉ କିଏ ଶୁଣିବ ବୋଲି ମତେ ସେ ଏକାଟିଆ ଡାକି ବହୁତ କଥା କହେ । କିଛି କିଛି କାମ ବି ବରାଦ କରେ । ମୁଁ ଖୁଡ଼ୀ ମୁହଁରେ ହସିକରି କଥା କହେନି । ତାକୁ ଦରଦ ଦେଖାଇଲା ଭଳି ବହୁତ ଥଟ୍ଟାକରେ । ସେ ବୁଝିପାରେନା । ବରଂ ମତେ ତାର ଭାରି ବିଶ୍ୱାସ । ଆଜି ସାନ୍ତରା ସାଇ ଅଇଁଠୁ ଗୁଣିଆକୁ ଡାକିବା ପାଇଁ ତାଠୁଁ ଗୋଟେ ନଡ଼ିଆ ଆଦାୟ କଲିତ, କାଲି ବୈରାଗୀ ପଧାନ ମନ୍ତ୍ରର ତାରିଫ୍ କରି ସାତଟା ହନୁମାନ ପଇସା ହାସଲ କଲିଣି । ଖୁଡ଼ୀ ବିଶ୍ୱାସରେ ମତେ ନିଛାଟିଆ ଜାଗାକୁ ଡାକି ଚୁପ୍‌ଚାପ କାନି ଭିତରୁ କାଢ଼ି ଦେବ । କେତେ ନାଉଲି କାଉଲି ହେଇ ମୋ ହାତ ଓଠ ଧରି କହିବ । ମଝିରେ ମଝିରେ ଖୁଡ଼ୀର ବିଶ୍ୱାସକୁ ବଞ୍ଚାଇ ରଖିବାପାଇଁ ତେଉଁରିଆ ଗୋଟେ ଗୋଟେ ଆଣି ଦିଏଁ । ଖୁଡ଼ୀ ସାତ ପରସ୍ତ କରି କାନିରେ ବାନ୍ଧି ଘରକୁ ନେବ । କଇଁ ବେକରେ ମୋ କହିବା ମୁତାବକ ସାତକେରା ନାଲି ସୂତାରେ ଗୁନ୍ଥାହେଇ ବନ୍ଧା ହେବ । କଥାଟାକୁ ଆହୁରି ଟିକିଏ ଉପଭୋଗ୍ୟ କରିବା ଲାଗି ମୁଁ ବି ବିଧିଟାକୁ ବେଳେ ବେଳେ ଲମ୍ବାଇ ଦିଏଁ । ଶନିବାର କି ମଙ୍ଗଳବାର ମାଛି ଅନ୍ଧାରିଆ ବେଳୁ ଉଠି ଅଧୂଆ ମୁହଁରେ ଖୁଡ଼ୀ ବାଉଁରୀକୁ ଅଢ଼େଇଥର ତେଇଁ ସାତଥର ଭୂଇଁରେ ବସି ଗୁଣୁଗୁଣୁ ହେଇ ଗାର କାଟୁଥିବ । ଆମେ ଛପି ଛପି ସୁଆଙ୍ଗଟାକୁ ବେଶ ଉପଭୋଗ କରୁଁ ।

କଇଁ ଲାଗି ଗାଁରେ ବି ବେଳେବେଳେ ବୁଢ଼ୀ କମର ଭିଡ଼ି କଜିଆ କରେ । ରାସ୍ତାରେ ଯାଉଁ ଯାଉଁ ନୂଆ ଗଛଟେ ଦେଖିଲାତ କଇଁକୁ ଗେହ୍ଲା କରି କହିବ- 'କଇଁ ଏ ପତର ଖାଇବୁ ?' ତାର ସବୁ ପ୍ରଶ୍ନର ଉତ୍ତରରେ ଧରିନିଏ କଇଁ 'ହଁ' କହୁଛି । ପର ବାଡ଼ିରେ ପଶି ପତର ଛିଣ୍ଡାଉ ଛିଣ୍ଡାଉ ଧରାପଡ଼ିଲା ତ ରୀତିମତ କଳି ଚାଲେ । ଖୁଡ଼ୀର ବିଶ୍ୱରୂପ ପ୍ରକାଶ ପାଏ, ଯେତେବେଳେ ଗାଳିଟା ତାଠୁଁ ଯାଇଁ କଇଁ ଉପରେ ପଡ଼େ । ମଜା ଦେଖିବା ପାଇଁ ସମସ୍ତେ କଇଁକୁ ଗାଳିଦେବା ଆରମ୍ଭ କରନ୍ତି । ସବୁଠୁଁ ବେଶୀ ଗମାତ୍‌ଟା ହୁଏ, କଇଁକୁ ଗାଳିଦେବା ଶୁଣି ଖୁଡ଼ୀ ଏକୁ ସାକ୍ଷୀ କରି କଇଁର ସଚ୍ଚୋଟ ପଣିଆ ପ୍ରମାଣ କଲାବେଳକୁ ସାକ୍ଷୀମାନେ ଯେତେବେଳେ କଇଁର ଓଲଟା ଦୋଷ ଧରନ୍ତି ।

ଆମ ଘରେ କଇଁ ପାଲା ଖୁବ୍ ଜୋରସୋରରେ ଚାଲେ । ଖୁଡ଼ୀ ଆମ ଘରକୁ ପାନ ଖାଇ ଆସିଲେ ନିଜେ ତ ଖଣ୍ଡେ ଖାଇବ । କଇଁ ଲାଗି ଛୋଟିଆ ପାନଖିଲେ ଇଆଡ଼େ ଚାହିଁ ଅଣ୍ଟାରେ ଖୋସିଦେବ । ମୋ କୁନି ଝିଆରୀ ମମି ବେଳେ ବେଳେ ଖୁଡ଼ୀ ଅଣ୍ଟାରୁ ପାନ ଛଡ଼ାଇ ଆଣେ । ମିଛରେ ରାଗିଯାଇଁ ପାଟିକରେ- "କଇଁ ଆମ ଘରର ନିଆଁ ଚୁଲିକି ? ତାକୁ କାହିଁକି ପାନ ଦେବୁ ?" ଆଉ ଯେତେ ଛୁଆ ଯୁଟିଯାଇ ଛିଗୁଲେଇ ଛିଗୁଲେଇ ହୋଇ କଇଁ ନାଁରେ ପଦ ଯୋଡ଼ନ୍ତି- "ବୁଢ଼ୀର ଢପ, କଇଁ ସୁଆଗ ମୋ ଥପ ଥପ ।" ଖୁଡ଼ୀ ବି ଆପଣା

ବୟସକୁ ଭୁଲିଯାଇ ସାଙ୍ଗେସାଙ୍ଗେ ଯୁଦ୍ଧ ଆରମ୍ଭ କରିଦିଏ । ଛୁଆଗୁଡ଼ାକ ତା ଚାରିପଟରେ ବୁଲି ବୁଲି ତାଳି ପିଟନ୍ତି- "କଇଁଲୋ କଇଁ, ବୁଢ଼ୀ ମନ ହୁଏ ହାଇଁ ପାଇଁ ।" କାଉ ଖୁମ୍ପିଲା ପରି ବୁଢ଼ୀର ଲୁଗାକାନି, ଅଣ୍ଟା ଖୋଷଣି ଟାଣି ଦେଇ ଦାଣ୍ଡିଆ ମାରି ଦେଉଥିବେ । ବୁଢ଼ୀ କାମୁଡ଼ିମାମୁଡ଼ି ହୋଇ ଗୋଡ଼ାଉ ଥିବ ଏଣେ କିଳିକିଳା ରଡ଼ି ଦେଉଥିବ, ଟେକା ପଥର ହାତରେ ଯାହା ପଡ଼ିଲା, ଫୋପାଡ଼ିବ । ଲୁଗାପଟା ଅସମ୍ଭାଳ । ସଂଘର୍ଷଟା ବେଶୀ ଘନେଇ ଆସିଲେ କାହାକୁ ଶିଖାଇ କଇଁକୁ ଫିଟାଇ ଆଣି ବୁଢ଼ୀ ଆଗରେ ଛାଡ଼ିଦେଲେ ତା ମୁଣ୍ଡରୁ ବିଷ ଉତୁରିଯାଏ । କଇଁକୁ କୁଣ୍ଢେଇ ଅସରାଏ ଆଗେ ଲୁହ ଗଡ଼ାଇ ପକାଇବ-"ତୋରିଲାଗି ଏତେ ଗଞ୍ଜଣା ସହୁଛିଲୋ । ତୋ ଆଗରୁ ଭଲା ଜୀବନ ଚାଲି ଯାଆନ୍ତା ।" ଛୁଆଗୁଡ଼ାକ ଏଣେ ତା'ରି ଆଗରେ ବସି ମିଛରେ କାନ୍ଦଣା ସ୍ୱର ଧରି ଗାଲରେ ହାତ ଦେଇ ଗୀତ ଆରମ୍ଭ କରନ୍ତି-'ହାଁ ମୋ କଇଁ ସୁନ୍ଦରୀ ଲୋ -ପାନ ଚୋରି କଲି ତୋ'ରି ପାଇଁଲୋ ।' ବୁଢ଼ୀ ଆଉ ମାରିବାକୁ ଗୋଡ଼ାଏନି । କଇଁକୁ ଟାଣି ଟାଣି ନେଇ ଯାଉଁ ଯାଉଁ ବରବର ହୋଇ କହିଯାଏ-ପୋଡ଼ାମୁହିଁ ! ଏଙ୍କ ଦୁଆର ଫେର ମାଡ଼ିଛୁ ତ ତୋର ଦିନେ କି ମୋର ଦିନେ ।'

କଇଁ ଖୁଡ଼ୀ ଘରକୁ ପ୍ରଥମେ ଯେତେବେଳେ ଗଲା ସେତେବେଳେ କାମଦାମ ପକାଇ ଦେଇ ସେ ବସି ଘଣ୍ଟା ଘଣ୍ଟା ଗେଲ କରୁଥିଲା । ଆସ୍ତେ ଆସ୍ତେ ଅବଶ୍ୟ ମାତ୍ରାଟା କମିଗଲା । ତେବେ ବି ବୁଢ଼ୀ ମନରେ କିଛି ଦୁଃଖକଥା ପଡ଼ିଲେ ତ, କଇଁକୁ କୁଣ୍ଢେଇ କାନ୍ଦିବ । ତା ବେକ ଥୋଳାରେ ମୁହଁମାଡ଼ି ଲୁହ ଗଡ଼ାଇବ । କଇଁ ବି ତା ଦରଦ ବୁଝିଲା ଭଳି ବୁଢ଼ୀର ବେକ ପିଠିକୁ ଚାଟୁଥିବ । ଲାଞ୍ଜ ଆସ୍ତେ ଆସ୍ତେ ହଲାଇ ପଙ୍ଖା କରୁଥିବ । ବୁଢ଼ୀ ହଠାତ୍ ବୁଲିପଡ଼ି କଇଁ ମୁହଁରୁ ଲାଳ ପୋଛି ପକାଇବ । ମୁଣ୍ଡରେ ପିଠିରେ ଧୂଳି ଲାଗିଛି ବୋଲି ମିଛରେ ଝାଡ଼ିଦେବ । ତା ଥୋମଣିକୁ ଟେକିଆଣି ମୁହଁରେ ଲଗାଇବ-"ମୁଁ ପୋଡ଼ାମୁହିଁ ବସିଛି କଣ ଲୋ ? ମୋ ଛୁଆ ଭୋକରେ ଆଉଟି ହୋଇଗଲାଣି ।" କଇଁର ପେଟ ଚିପି ପକାଇବ-"ପେଟତ ଯାଇଁ କେଉଁ ପାତାଳରେ ପଶିଛି ।" ବୁଢ଼ୀ ତରତର ହୋଇ ପଖାଳ ବାଢ଼ିବ । ଏକା ବେଲାରେ ସାଙ୍ଗ ହୋଇ ଖାଇବେ । କଇଁ ପାଟି ତଳର ବଡ଼ ବଡ଼ ରୁମ ଦେହରୁ ତୋଡ଼ାଣି, ନାଳ ଟୋପା ଟୋପା ହୋଇ ବୁଢ଼ୀ ବେଲାରେ ପଡୁଥିବ । ବୁଢ଼ୀ ଖାଉଁ ଖାଉଁ ମୁହଁ ପୋଛିଦେଇ ବଡ଼ିପୋଡ଼ା ଟିକିଏ, ପଣସ ମଞ୍ଜି ଖଣ୍ଡେ ତା ପାଟିରେ ଦେବ । କଇଁଟା ଥୋମଣି ଉପର ନାକ ପୁଡ଼ାକୁ ଜିଭରେ ଚାଟି ପକାଉଥିବ । ବେଳେବେଳେ କଇଁ ବି ହଇରାଣ କରିବାକୁ ଛାଡ଼େ ନି । ଖାଇଲାବେଳେ ମୁତି ପକାଏ । ବୁଢ଼ୀ ହସି ହସି ଛାଞ୍ଚୁଣିଟାକୁ ମୁତ ଉପରେ ପକାଇ ବସିପଡ଼ି କଇଁ ମୁହଁରେ ଛୋଟିଆ ଚାପଡ଼ଟେ ମାରେ- "ଅଲକ୍ଷଣି, ଏ'କି ଗୁଣଲୋ ?" କଇଁର ଖାଇବାକୁ ଇଚ୍ଛା ନ ଥିଲେ ଥରେ ଥରେ ମୁହଁ ପୁରାଇ ଭାତ ତୋରାଣି ଢାଳି ଦିଏ । ଯେତେ ଗେଲ କରି ପାଟିରେ ଗେଞ୍ଜିଲେ ବି ମୁହଁ ବୁଲାଏ । ବୁଢ଼ୀ ଚିଡ଼ିଉଠେ-"ଲକ୍ଷ୍ମୀଛାଡ଼ି, ଦାନାକୁ ନିନ୍ଦୁଛୁ ! ଜଗନ୍ନାଥ ମହାପ୍ରଭୁ ଭାତ ମୁଠାକପାଇଁ ବାରଦ୍ୱାର ହୋଇଥିଲେଟି ।" ବୁଢ଼ୀ ଦିନେ ଦିନେ ସଞ୍ଜ ବେଳେ ବେଳସୁ କାମ ସାରି କଇଁ ମୁହଁକୁ

କୋଡ଼ରେ ଧରି ଲକ୍ଷ୍ମୀପୁରାଣ କଥା କହେ । କଇଁ କଣ ବୁଝେ କେଜାଣି ବୁଢ଼ୀ ମୁହଁକୁ କଣେଇ କଣେଇ ଅନାଇ ରହେ । କାନକୁ ହଲାଇ ହଲାଇ ବୁଢ଼ୀ କୋଡ଼ରେ ପିଟେ । ବୁଢ଼ୀ ଗେଲକରି କଅଁଳେଇ କହେ-'ହଁ, ଶାସ୍ତ୍ର ପୁରାଣ କଥା ଶୁଣୁ -ଅଧମ ଜୀବ –ତୋ ଛୁଆ ପିଲାର ମା ଠାକୁରାଣୀ ମଙ୍ଗଳ କରିବେ ।"

ବୁଢ଼ୀ ବାଡ଼ିରେ ଧନିତ୍ରୀ ଗଛ, ଗୋପକାନ୍ଥୁ ଗଛ ଏ ଗାଁ ସେ ଗାଁରୁ ଆଣି ଲଗାଇଛି । ଛୁଆଟା ଭାଗ୍ୟକୁ ଆସି ଜୋଟିଛି । ଦେହ ପା ତ ଅଛି । କେତେବେଳେ କଣ ହୋଇଯିବ । ଗଉଡ଼ ବିଦେଇ ଦାସକୁ ବୁଢ଼ୀ ଧରମପୁଅ କରିଛି । ଆଜି କଇଁର ପତଳା ଝାଡ଼ା ହୋଇଛି, କାଲି କଇଁ ଦିହରେ ଜର ପୂରେଇଛି । ବୁଢ଼ୀ ତାକୁ ଉଠେଇ ବସେଇ ଦେବ ନି । "ବୁଝିଲୁନାରେ ବିଦିଆ, କାଲି ପଦିଆ ଘର ବାଆଁସ ଗଛ ହଣା ଯାଇଥିଲା । କଅଁଳିଆ ପତରଦିଟା ଦେଖି ଲୋଭ ହେଲା । ମୁଠେ ତୋଳି କାନିରେ ପୁରେଇ ଆଣିଥିଲି । କଇଁଟା ତ ଟାଉକି । ମୁଁ ମନାକରୁଛି । ସବୁ ଖାଇଦେଲା । ସକାଳୁ ତ ଖାଲି ଛେରୁଛି । ତା ପାଟିକି ଟିକିଏ ପାଣି ଯାଇନି ।" ବିଦିଆଁକୁ ଟାଣି ଟାଣି ବୁଢ଼ୀ ଆଣିବ । ବିଦିଆ ବି ଲୁହା ଜାଣି ପାଣି ଦେଇ ଜାଣେ । ଚେରମୂଳ କଣ ଟିକିଏ ଦେଇ ବୁଢ଼ୀ ପାଖରୁ ନଡ଼ିଆ, କଦଳୀ, ଶାଗକେରେ କିଛି ନା କିଛି ଆଦାୟ କରିନିଏ ।

ବୁଢ଼ୀର ଧାରଣା କଇଁଟା ସବୁବେଳେ ରୋଗରେ ପଡୁଛି । ମିଛରେ କଇଁର କଣ ହୋଇଗଲା ବୋଲି ବ୍ୟସ୍ତ ହୋଇ ପଡ଼ି ଧାଁଧପଡ଼ ଲଗାଇବ । ବାର ଅଜନ୍ତରା ଜାଗାରେ ବୁଲୁଛି । ବେଳକାଳ, ଲହୁଲୁହାଣି, କେତେ କଣ ? ବୁଢ଼ୀର ଦେହ ଶୀତେଇ ଉଠେ । ଥରେ ଖରାବେଳେ କଇଁ ଆସି ଚାରିକାତ ମେଲାଇ ପଡ଼ିଗଲା । କଇଁ ତୋର କଣ ହେଲାବୋଲି ବୁଢ଼ୀ ବସିପଡ଼ି ଘଷି ପକାଇଲା । ବେକ ଥୋଳାକୁ ଆଉଁସି ପକାଇଲା । କାନ ଫୁଙ୍କିଲା । ପାଣି ଦି'ଲୋଟା ଆଣି ମୁଣ୍ଡରେ ଢାଳି ଦିଡ଼ୋକୁ ପେଇଦେଲା । ଆମ ଘରେ ଆସି କାନ୍ଦି ବୋବାଇ ଉଛନ୍ନ । ମୁଁ ଯାଇଁ କଇଁକୁ ଟିକିଏ, ଟେକାଟେକି କରି ଆଉଁସି ଦେଲି । ଗାଈଟା ଉଠି ବସିଲା । ବୁଢ଼ୀର ଦମ୍ ଆସିଲା । ତା ମୁହଁରେ ହସ ଆସିଲା । ମୁଁ ଟିକିଏ ମୁହଁ ଶୁଖାଇ ସବୁ ଜାଣିଲାଭଳି କହିଲି-"ବୁଝିଲୁନା ଖୁଡ଼ୀ, ଖରାବେଳଟାରେ ତ ବୁଲୁଛି । କାହା ହାବୁଡ଼ରେ ପଡ଼ିଯାଇଛି ।" ବୁଢ଼ୀ ମୋ ପାଟିରୁ କଥା ଛଡ଼େଇ ନେଇ କହିଲା-"ହଁରେ ବାପ, ଖରାବେଳେ କାନକୋଳି ଲଟା, କଣ୍ଟାସିଜୁ ବୁଦାରେ ନିପାଣିଆ ପିଶାଚୁଣିଏ ଆଶରା ନିଅନ୍ତି । ଏ ନିଆଁମୁହିଁକୁ ଯେତେ କହିଲି କଣ ମାନିବ ।" ମୁଁ ଶଙ୍କୁରୁ ବେହେରା ଠୁଁ କାଲି ତେଉଁରିଆ , ମନ୍ତୁରାପାଣି ଆଣିଦେବି ବୋଲି ଜବାବ ଦେଇ ଆସିଲି । ରାତିକି ବୁଢ଼ୀ ପଞ୍ଚାନନ ମେଳା କଲା । ଗାଈଟା ଆସି ପଡ଼ି ଉଠିବା ଭିତରେ ସେ ତେତିଶକୋଟି ଦେବତାଙ୍କ ଭିତରୁ କୋଟି ଦେଢ଼ଯାଁଙ୍କ ପାଖରେ ମାନସିକ କରିଥିବ ମୁଁ ଜାଣେ । ରାତିକି ଯାଇ ବୁଢ଼ୀ ଘରୁ ପଞ୍ଚାନନ ମେଳା ଭୋଗ ଖାଇ ଆସି ଘରେ ଦମେ ସମସ୍ତଙ୍କୁ ହସାଇଲି । ତା ପରଦିନ ତା ଘରକୁ ଯାଇଁ ତାକୁ ଖୋଜିଲି । ବୁଢ଼ୀ ବାଡ଼ିରେ ବୁଲି ବୁଲି କାନକୋଳି ଗଛ, ଶିଜୁବୁଦା ସବୁ ହାଣୁଛି । ହାଣି ସାରି ମନ୍ତୁରାପାଣି

ଛିଞ୍ଚୁଛି । ହସରେ ମୋ ପେଟ ଫାଟିଗଲା, ମୁଁ ପଳାଇ ଆସିଲି ।

କଇଁ ଆସ୍ତେ ଆସ୍ତେ ବଡ଼ ହୋଇ ଯାଉଛି । ସେ ଯେତିକି ବଡ଼ ହେଉଛି ଖୁଡ଼ୀ ତାକୁ ସେତିକି ସେତିକି ପିଲାବୋଲି ଭାବୁଛି । କଇଁର ଦେହ କେତେବେଳେ କେମିତି ବିଗିଡ଼ି ଗଲେ କିଛି ନଖାଇ ସେ ପଡ଼ିରହେ । ବୁଢ଼ୀ କି ଆଉ ସମଳା ହୁଏ ? ତାର କାନ୍ଦଣା ଧାଁ ଧପଡ଼ ଆରମ୍ଭ ହୋଇଯିବ । ବାଡ଼ିରୁ କଅଁଳ କଅଁଳ ଦୂବଘାସ ଉପାଡ଼ି ତା ପାଟିରେ ଗେଞ୍ଜିବ । ସେ ନ ଖାଇଲେ ଆଉଁସି ଆଉଁସି କେତେ ଗେହ୍ଲା କରିବ । ଶେଷରେ ନିଜେ ପାଟିରେ ଘାସ ଚୋବାଇ କଇଁ ପାଟିରେ ପୂରାଇବ । ଛୁଆଦିନେ ବୁଢ଼ୀ କଇଁକୁ ଚୋବାଇଲା ଘାସ ଖାଇବାକୁ ଦେଉଥିଲା । କଅଁଳ ପାଟିକୁ କାଳେ ବାଧା ହେବ । ସେଥିଲାଗି ମୋ ଝିଆରୀ ପୁତୁରାମାନେ କମ ଚିଡ଼ାନ୍ତି ନାହିଁ । ଖୁଡ଼ୀକୁ ଖାଇ ଆସିବ ବୋଲି ନିମନ୍ତ୍ରଣ କରିଦେଇ ଆସନ୍ତି । ସେ ଆସିଲେ ଠାଆ କରି ଦେଇ ବସେଇ ପାଛିଆରେ ମେଞ୍ଚାଏ ଘାସ ଆଣି ଥୋଇ ଦିଅନ୍ତି । ତା ପରେ ପାଲା ଲାଗିଯାଏ । ଆମେ ସବୁ ଛୁଆଙ୍କ ଉପରେ ରାଗି ପାଟିତୁଣ୍ଡ କରୁଁ । କିନ୍ତୁ ବେଶ୍ ବି ଉପଭୋଗ କରୁ ।

ଶୋଇବା ଆଗରୁ କଇଁ ଗୋଡ଼ରେ ଟିକିଏ ହାତ ନ ମାରିଲେ ବୁଢ଼ୀ ପହିଲୁ ପହିଲୁ ଶୋଉ ନଥିଲା । ଟିକିଏ ଥଣ୍ଡା ପଡ଼ିଲେ ସୋରିଷ ତେଲରେ କଳାଜିରା, ରସୁଣ ପକାଇ ଫୁଟାଇ କଇଁ ଦେହରେ ଘଷିବ । ଛୁଆଟାର ସର୍ଦ୍ଦି କାଟି ପକାଇବ । ଗୋବର ଟିକିଏ କଇଁପାଖରେ ପଡ଼ି ରହିବ ନାହିଁ । ଛୁଆ ଦେହ ଅସନା ହେବ । ରାତିରେ ଦଶଥର ଯାଇଁ ଗୋବର ପୋଛୁଥିବ । କଇଁକୁ ମଶା ଖାଇଯିବ ବୋଲି ବୁଢ଼ୀ କରଞ୍ଜ ଫୁଲର ଧୂଆଁ ସଞ୍ଜବେଳକୁ ପକାଇବ । ରାତିରେ ଅନିଦ୍ରା ହୋଇ ମଶା ଗୋଡ଼ାଉଥିବ । ଶୀତଦିନ ଲାଗି କଇଁ ପାଇଁ କନ୍ଥା ସିଲେଇ କରି ରଖିଛି । କଇଁ ଶୋଇଲେ ତାକୁ ଢାଙ୍କିଦିଏ । ସେତ ଦେହରୁ କନ୍ଥା ଖସେଇ ପକାଇ ମୁତି ଘାଣ୍ଟି ଚକଟି ରଖିଥିବ । ବୁଢ଼ୀ ଆସି ଗାଳିଦିଏ–"ମୁଁ ତ ଗରିବ ଲୋକ । ତୋ ପାଇଁ କେତେ ସାର ତିଆରି କରି ରଖିବି" । ବର୍ଷକୁ ତ ଦି'ଖଣ୍ଡ କନା ବି ମୋତେ ମିଳୁନି ।" ପୁଣି ଶୁଖିଲା କନ୍ଥା ଖଣ୍ଡେ ଢାଙ୍କି ଦେଇଯାଏ । କଇଁର ଯେଉଁଦିନ ପ୍ରଥମେ ଶିଙ୍ଗ ଗଜରେଇଲା, ବୁଢ଼ୀ ତେଲ ଗରମ କରି ଘଷୁଥିଲା । କଥାଟା ପ୍ରଘଟ ହୋଇଗଲା । ସେଥିଲାଗି ବୁଢ଼ୀ କମ୍ ଅପଦସ୍ତ ହୋଇଚି ।

କଇଁଟା ବି ମଣିଷଭଳି ବୁଢ଼ୀର କଥା ବୁଝିପାରେ । ବୁଢ଼ୀକୁ ଛାଡ଼ି ଦିଘଣ୍ଟା ବି ସେ ରହି ପାରିବ ନି । ଗୋରୁ ଗୋଠରେ ଭରସିକରି ବୁଢ଼ୀ ତାକୁ ପଠାଏନି । ଦୁଷ୍ଟ ଅବିଜା ଗୋରୁଗୁଡ଼ାକ ମାରିବେ, କିଏ କାଳେ ପିଟିବ । ଯେଉଁଠି ଚରୁଥାଉ ବୁଢ଼ୀ କଇଁ ବୋଲି ଡାକିଦେଲେ ସେ ବୋବାଇ ଜବାବ ଦେବ । ବୁଢ଼ୀ ପାଖକୁ ଧାଇଁ ଆସି ତା ଦେହରେ ମୁହଁ ଘଷି ପକାଇବ । ବୁଢ଼ୀ ପତର ଦିଟା ହେଉ, ଘାସ କେରେ ହେଉ କାନିରେ ବାନ୍ଧିଥିବ । କାନିରୁ ଫିଟାଇ ତା ପାଟିରେ ଗେଞ୍ଜିଦେଇ ଗେହ୍ଲା କରିବ । କଇଁକୁ ଶରଧା କଲାବେଳେ ବୁଢ଼ୀ ସବୁକଥା ଭୁଲିଯାଏ । ରାସ୍ତା ଘାଟରେ କଇଁକୁ ଯେଉଁଠି ଦେଖିବ ତା ସାଙ୍ଗରେ କଥାବାର୍ତ୍ତା

କରିବ । ତାକୁ ଦେଖି କିଏ କଣ କଇଁକୁ କହୁଛି କି ହସୁଛି ସେଥିଲାଗି ଆଜିକାଲି ତାର ଖାତିର ନ ଥାଏ । ବେଶୀ ଖରା କି ବର୍ଷା ହେଲେ କଇଁକୁ ବୁଢ଼ୀ ବିଚାରି ଦିନ ବାନ୍ଧିରଖେ । ତା ପରେ ଖୋଲିଲେ କଇଁ ଆଉ ଧରା ଦିଏନି । ବୁଢ଼ୀ ଡାକିଲେ ବି ପାଖକୁ ଆସେନି । ବୁଢ଼ୀର ରାଗ ହୋଇଯାଏ "କଣ'ଲୋ ଟୁପୁସି, ତୋର ଏତେ ଦିମାକ୍ ।" ବୁଢ଼ୀ ଗୋଡ଼ାଏ, କଇଁ ଡେଇଁ ପଡ଼ି ବୁଢ଼ୀର ଧାନଉଷୁଆଁ ହାଣ୍ଡି, ମାଟି ଗୋବର ଆଟିକା ବେଳେବେଳେ ଭାଙ୍ଗିପକାଏ । ବୁଢ଼ୀର ପୀତ ମୁଣ୍ଡକୁ ଉଠିଯାଏ । ବାଡ଼ିଧରି ଗୋଡ଼ାଏ । କଇଁ ବି ଦାଣ୍ଡିଆ ମାରେ, ବୁଢ଼ୀ ଗୋଡ଼ାଉ ଗୋଡ଼ାଉ ଝୁଣ୍ଟିପଡ଼ି ପଡ଼ିଯାଏ । ଛୁଆଗୁଡ଼ାକ ତାଳି ପିଟନ୍ତି । ଗାଁ ମାଇପେ ମୁହଁରେ ଲୁଗା ଦେଇ ହସନ୍ତି । ବୁଢ଼ୀକୁ ବାଧିଯାଏ, ସେ କାନ୍ଦିପକାଏ, ନାକ ପୋଛି କାନ୍ଦିଲା ଗଳାରେ କଇଁକୁ ଡାକେ-"ସମସ୍ତଙ୍କ ଆଗରେ ମତେ ଟାହୁଲି କରିବାକୁ ସୁଖ ଲାଗୁଛି ? ହଁ ଲୋ ଝିଅ ମୋ କରମ ।" କଇଁ ପଛକୁ ଫେରି ଚାହେଁ ବୁଢ଼ୀ ଆଉ ଗୋଡ଼ାଉଛି କି ନାହିଁ ? ବୁଢ଼ୀ କାନ୍ଦି ପକାଇ 'କଇଁ' ବୋଲି ଡାକେ । ଗାଈଟା ସବୁ ଜାଣିଲାପରି ଦୌଡ଼ିଆସି ବୁଢ଼ୀ ଦେହରେ ମୁହଁ ଘଷେ ।

ସେଦିନ ବୁଢ଼ୀର ଦେହ ସୁଖ ନଥାଏ, ଦି ଦିନ ଦେହରୁ ଜର ଓହ୍ଲାଇଲା ନାହିଁ, କଇଁଟା ଘରେ ବନ୍ଧା ହୋଇ ପଡ଼ିଥାଏ । ଦେହ କଣ ହେଲା ବୁଝିବାକୁ ମୁଁ ଗଲି, ଖୁଡ଼ୀ କଇଁ ପାଖକୁ କୁନ୍ଥାଇ କୁନ୍ଥାଇ ଉଠିଗଲା, କଇଁକୁ ଖୋଲିଦେଇ ଆଉଁଷି ବିଦା କରିଦେଲା-"ଯା, ଲୋ ମା' ଦି ଦିନ ହେଲା ତ ଘରେ ବନ୍ଧା ହୋଇ ପଡ଼ିଛୁ, ଟିକିଏ ବୁଲି ଆସିବୁ, କାହା ସାଙ୍ଗରେ କଳି କଜିଆ କରିବୁ ନି, ଯାଆ ।"

କଇଁଟା କଣ ବୁଝିଲା କେଜାଣି ମୋଟେ ହୁଁଙ୍କିଲା ନାହିଁ । ବୁଢ଼ୀକୁ ସେମିତି ଜଳ ଜଳ କରି ଚାହିଁ ରହିଲା । ବୁଢ଼ୀ କଇଁକୁ ପୁଣି ବୁଝାବୁଝି କରି ଦୁଆର ମୁହଁରେ ଛାଡ଼ିଦେଇ ଆସିଲା, ମତେ କହିଲା, "ପୁଅ, ଟିକିଏ କଇଁଟା ଉପରେ ନିଘା ରଖିଥିବୁ । ମୁଁ ତ ଠିଆ ହେଇ ପାରୁନି, ଦିଘଣ୍ଟା ଛୁଆଟା ଟିକିଏ ବୁଲି ଚାଲି ଗୋଡ଼ ଫେରାଇ ଆସୁ । ମୋ ରାଣଟି ନେଇ ଆସିବୁ ।" ମୁଁ ହଁ କହି ଘରକୁ ଆସିଲି, ଘରେ ଖଟ ଉପରେ ଶୋଇ ବୁଢ଼ୀ କଥା ଭାବୁଥାଏ । ମଣିଷ ଆଉ ପଶୁ ଭିତରେ କି ଅମାୟ ଆତ୍ମୀୟତା-କି ଅନାବିଳ ପ୍ରେମ ! ମୁଁ ଭାବି ଭାବି ମୁଗ୍ଧ ହୋଇ ପଡ଼ିଲି । ହଠାତ୍ ବାହାରୁ ଛୁଆଙ୍କ ଗୋଳମାଳ ଶୁଭିଲା, ହସ, ତାଳି, ଚାପୁଡ଼ା, ପାଟି, ମୁଁ ବାହାରକୁ ଉଠି ଆସିଲି, କଇଁ ମୁହଁରେ ଗୋଟାଏ ହାଣ୍ଡି ପଶିଛି । ସେ ଏପାଖ ସେପାଖ ଦୌଡ଼ୁଛି । ଛୁଆଗୁଡ଼ାକ ଗୋଡ଼ାଇ ଗୋଡ଼ାଇ ଟେକା ଫୋପାଡୁଛନ୍ତି, ତାଙ୍କ ଆଡ଼କୁ ତଡ଼ି ଆଣିଲା ବେଳକୁ ଗୋଟାକ ଉପରେ ଗୋଟେ ପଡ଼ି ପଳାଉଛନ୍ତି । ମୋତେ ଭାରି ଖରାପ ଲାଗିଲା । ବୁଢ଼ୀ ବିଶ୍ୱାସରେ ମୋ ଉପରେ ଭାର ଦେଇ ନିଶ୍ଚିନ୍ତ ରହିଥିବ, ଏକଥା ଶୁଣିଲେ ସେ କି ଆଉ ସମ୍ଭଳା ହେବ ? ବିଚାରୀର ଦେହ ଭଲ ନାହିଁ । ମୁଁ କଇଁ କଇଁ ଡାକିଲେ ବି, ସେ କି ଶୁଣେ । ତାକୁ କିଛି ଦିଶୁ ନି । ଛାନିଆ ହୋଇ ଖାଲି ଅନାଧୁନିଆ ଦୌଡ଼ିଛି । ମୁଁ ଗୋଡ଼ାଉ ଗୋଡ଼ାଉ ତା ମୁଣ୍ଡଟା ପୋଲ ଦେହରେ ଠୁକର ଖାଇଗଲା । ହାଣ୍ଡିଟା

ଭାଙ୍ଗିଗଲା । ହାଣ୍ଡିର ମୁହଁଟା ବେକ ଭିତରକୁ ଗଳିଗଲା । ମୁଁ ଯାହା ଦେଖିଲି ମୋର ହଲକ ଶୁଖିଗଲା । ଗୋଟେ ଶିଙ୍ଘ ଅଗରୁ ଟିକିଏ ଫାଟି ଯାଇଛି, ରକତ ବୋହୁଛି । ମତେ ବୁଢ଼ୀ କଣ କହିବ ? କାହା ସଙ୍ଗେ କେଉଁଠି ଲଢ଼ି ଶିଙ୍ଗ ଭାଙ୍ଗିଛି । କଇଁକୁ ଧରି ଅପରାଧୀଙ୍କ ପରି ଖୁଡ଼ୀ ଘରକୁ ଗଲି । ଖୁଡ଼ୀ କଇଁକୁ ଦେଖିଲାକ୍ଷଣି ମତେ ଖାଲି କଟମଟ କରି ଚାହିଁ ରହିଲା । ଆଖିରୁ ତାର ଠପ ଠପ ଲୁହ ଗଡ଼ି ପଡୁଥାଏ । ମୁଁ ଖୁଡ଼ୀକୁ ବସେଇ ଦେଇ କଇଁକୁ ବାନ୍ଧି ପକେଇଲି । ସେ ଉଠିପଡ଼ି ଅଡୁଆବାଳ କେରେ ଆଣି ବିରି ଦିଟା ବାଟି ଶିଙ୍ଗରେ ବାନ୍ଧିବ ବୋଲି ଯାଉଁ ଯାଉଁ ପଡ଼ିଗଲା । ମୁଁ ଯାଉଁ ଯାଉଁ ଫେରିପଡି ଉଠି କଇଁ ଶିଙ୍ଗରେ ବାନ୍ଧିଦେଲି । ବାଇଚି ଆଟିକା ଛୁଇଁ ଛୁଅନ୍ତା ହୋଇଛି ବୋଲି ଗାଇଟା ଉପରେ ଆଖଣ୍ଡଳମଣି ପାଦଦୁକା ଦି ଲୋଟା ପାଣି ଢାଳିଲା । ମୁଁ ଯେତେ ମନା କଲେ ବି ନିଜେ ଯାଇଁ ପୋଖରୀରେ ବୁଡ଼ିପଡ଼ି ଆସିଲା । ମୁଁ କେବଳ ତଳକୁ ମୁହଁ ମାଡ଼ି ଚାଲି ଆସିଲି ।

କଇଁ ଖୁବ୍ ବଡ଼ ହୋଇଗଲାଣି, ବୁଢ଼ୀର୍ ଭାବନା ବି ଆଗେଇ ଯାଏ । ଗୋପକାହ୍ନୁ ଗଛକୁ କଇଁଟା ଟାଣି ଦିନେ ଖାଇଦେଲା । ବୁଢ଼ୀ ଗଛଟାକୁ ବାଡ଼ରେ ଟେକି ସଜାଡୁ ସଜାଡୁ କହିଲା–"ପୋଡ଼ାମୁହିଁ, ଟାଉକି, ଯାହା ପାଇଲା ପାଟିରେ ପକାଇଲା, ତୋରି ପିଲା ପିଚିକା ଲାଗି ଗଛଟାକୁ ଲଗେଇଛି ।" କଇଁ ବାଡ଼ କଡ଼ରୁ ଯାଇଁ ତଳୁ ଦୂବ ଡେମ୍ପକୁ ଥୋମଣିରେ ଓଟାରି ଓଟାରି ଖାଉଥିଲା । ଲାଞ୍ଜ ହଲାଇ ହଲାଇ ଦେହରୁ ମାଛି ହୁରୁଡ଼ାଉ ଥାଏ । ବାଆଁ ପାଖ କଟା କାନଟା ଭିତରେ ଡାଆଁସଟା ବସି ରକତ ଚୋଷୁଛି, ଯେତେ ହଲାଇଲେ ଯାଉନାହିଁ । କଇଁ ଉପରେ ତା ମାଆର ତିନିଟା ଛୁଆ ମାସେ ଦେଢ଼ ମାସର ହେଇ ଠକ୍ ଠାକ୍ ପଡ଼ି ମରିଗଲେ । କଇଁକୁ ବୁଢ଼ୀ ଘରକୁ ଆଣିଲା ପରେ ତା ବାଆଁ କାନରୁ ଟିକିଏ କାଟି ଦେଇଛି । ଖଣ୍ଡିଆ କରିଦେଲେ ଯମ ଘୃଣା କରି ଆଉ ନେବ ନି । ବୁଢ଼ୀ ଧାଇଁ ଧାଇଁ ଯାଇଁ ଡାଆଁସଟାକୁ ଚାପଡ଼ାଟିଏ ପକାଇଲା । କାନଟା ହଲିଗଲା, ଡାଆଁସଟା ଉଡ଼ି ପଳାଇଲା । କଇଁ ଟିକିଏ ମୁଣ୍ଡ ଟେକି ଚାହିଁଲା । ତାପରେ ପୁଣି ଯାଇଁ ଘାସ ଉପରେ ଥୋମଣି ଚଲାଇଲା । ଖାଇଲା ବେଳେ ଥୋମଣି ଉପରେ ଚମଡ଼ାଟା କୁଞ୍ଚାଇ ହୋଇ ଯାଉଥାଏ । ମୁହଁ ଉପରେ ଶିରାଗୁଡ଼ାକ ଉପରକୁ ଫୁଟି ପଡୁଥାଏ । ବୁଢ଼ି ମୁହଁ ଉପରେ ଶିରାଗୁଡ଼ିକୁ ଆଙ୍ଗୁଳି ଟିପି ଟିପି ଆଉଁସି ଦେଲା । ଦେହଟା ଯାକରେ କଳାଶିରା ବୁଲିଗଲାଣି । କାଲି ଛାଡ଼ି ପହରିଦିନ ଏଟା ମାଆ ହେବ । ବଅସ କ'ଣ ବସିଛି । ବୁଢ଼ୀ ମନ ଭାବନାରେ ପୋତି ହୋଇ ପଡ଼ିଲା । ସେ ସେଠି ବସିପଡ଼ି ଭାବିଲା, କଇଁର ଛୁଆ ହେବ । ତାରି ପରି ସଫା ଧୋବ ଟୁକ ଟୁକ କଅଁଳା ବାଛୁରୀଟିଏ ହେବ । ତା ମୁଣ୍ଡରେ ଗୋଟିଏ ନାଲି ଚାନ୍ଦ ରହିଲେ ଶୋଭା ଦିଶିବ । ବାଡ଼ିରେ ଦାଣ୍ଡରେ ସେ ଦାଣ୍ଡିଆ ମାରିବ । ଯିଏ ଯିବ ତା ପଛରେ ଦଉଡ଼ିବ । ନା, ନା, ସେ ତାକୁ ଦାଣ୍ଡକୁ ଛାଡ଼ିବ ନି । ପଡ଼ିଶାଘର ଓଳିରେ ଲଣ୍ଡା କୁଅଟା ଅଛି, କେତେବେଳେ କେଉଁ କଥା ? କଇଁର ଛୁଆଟା ଭାରି ଦୁଷ୍ଟ ହେବ, ତା ହାଣ୍ଡି କୁଣ୍ଡେଇ ଭାଙ୍ଗିବ । ତା ଚାଉଳ ଟୋକେଇରେ ଜବରଦସ୍ତି ମୁହଁ ପୁରେଇବ, ବାଡ଼ିରେ ତା ଓଦା ଲୁଗାକୁ ଚୋବାଇବ, ତୁଳସୀ ଚଉରା ମୂଳରେ

ପୂଜା କଲାବେଳେ ପଛଆଡ଼ୁ ଆସି ମୁଣ୍ଡିଆ ମାରିବ, ହାତରୁ ତାଂର ଭୋଗ ଛଡ଼େଇ ଖାଇବ, ଭାରି ବିଟଳ, ଭାରି ଚଗଲା ହେବ, ବୁଢ଼ୀ ଭାବୁ ଭାବୁ ହସି ପକାଇଲା, କଇଁ ବୁଢ଼ୀ ପାଖରେ କେତେବେଲୁ ଶୋଇ ପାକୁଳି କରୁଥିଲା, ବୁଢ଼ୀ ତା କାଂନକୁ ମୋଡ଼ି ଛୋଟିଆ ଛୋଟିଆ ଚାପଡ଼ଟିଏ ଦେଇ କହିଲା-"ତୋ ଛୁଆ ଭାରି ଅମାନିଆ ହେବ, ତାକୁ ପିଟି ପିଟି ମୁଁ ଦୋରସ୍ତ କରିବି ।"

ବୁଢ଼ୀ ଏଣିକି କଇଁ କଥା ଅପେକ୍ଷା କଇଁର ଛୁଆ କଥା ବେଶୀ ଭାବେ, କଇଁର ଛୁଆ ହେବ, ତା ଝିଅ କଇଁର ପିଲା ହେବ, ମନ ତାର ଫୁଲିଫୁଲି ପଡ଼େ । ଘରେ ତାର ଦୁଧ ଦହି ଭାସିଯିବ, ସେ ଛୁଆଟାକୁ ବେଶୀ ବେଶୀ ଦୁଧ ଖୋଇବ, ତା ପାଇଁ ଯେତିକି ହେଲା ସେତିକି । ଅଧା ଦୁଧ ବିକି ବିରି କି କୋଳଥ ମୁଠେ ମୁଠେ ଖାଇବାକୁ ଦେବ, ଖାଇବାକୁ ନ ପାଇଲେ ସେଟା ଓଲିଆ ହେବ । ପର ବାଡ଼ିରେ ପଶିବ । ପର ଘର ଓଲାରିବ । ତା ନାଆଁ ପଡ଼ିବ, ନା, ପିଲାଟାକୁ ସେ ବେଳସୁ ଆକଟ କରିବ, ନ ହେଲେ ମା ଭଳି କାହା ସାଙ୍ଗରେ ଲଢ଼ି ଶିଙ୍ଗ ଭାଙ୍ଗିବ ।

ମାସ ପରେ ମାସ ଗଡ଼ିଗଲା, ତାରି ସାଙ୍ଗରେ ଗାଈ ସବୁ ଗୋଟେ ଦୁଇଟା ଛୁଆ ଜନ୍ମ କଲେଣି, ବୁଢ଼ୀର ମନ କାହିଁକି ଖଟକା ଧରେ । କଇଁ ଉପରେ ଚିଡ଼୍ ଚିଡ଼୍ ହୁଏ । ତାକୁ ଗେହ୍ଲା କରୁ କରୁ ତା ଛୁଆ କଥା ମନେ ପଡ଼ିଗଲେ ତାକୁ ଠେଲି ଦେଇ ମୁହଁ ଫୁଲେଇ ସେ ଚାଲିଯାଏ ।

କଇଁଟା ହଠାତ୍ ଦିନେ ବୋବାଳି ଛାଡ଼ିଲା, ଘରେ ପଘାକୁ ଟାଣି କସିମସି ଦେଲା, ବୁଢ଼ୀର ଖୁସି କହିଲେ ନସରେ । ଘର ଠଣାରେ ଥିବା ଗୋଟି ଅଣ୍ଡାଳି ଯାହା ପାଇଲା ଦିନକର ମଜୁରୀ ଦେଇ କଇଁକୁ ଫାର୍ମ ଷଣ୍ଢ ପାଖକୁ ପଠାଇଲା, ଫାର୍ମ ବାଲାକୁ ଆଠଣା ଟଙ୍କେ ଯାହା ପଡୁ ଦେବ ବୋଲି ଲୋକଟାକୁ ବାରମ୍ବାର ବୁଝାଇ କହିଲା ।

କଇଁର ଛୁଆ ହେବ, ବୁଢ଼ୀ ଆଖିରେ ନିଦ ନାହିଁ, ସେ କଥା ଭାବି ଭାବି ସେ ସବୁବେଳେ ବ୍ୟସ୍ତ ହୋଇପଡ଼େ । କଣ ହେବ, ତା କୋଡ଼ରେ ତ ପିଲା ବକଟେ ଭଗବାନ ଦେଇ ନାହାନ୍ତି, ସେ ବା କାହୁଁ ଜାଣିବ । ଗାଁର ବୁଢ଼ା ବୁଢ଼ୀ ସମସ୍ତଙ୍କୁ ପଚାରେ, ଯାର ଗାଈଛୁଆ ହେଲା ତ ସେଠି ଯାଇଁ ହାଜର ହୁଏ, ମଜା ଦେଖିବା ପାଇଁ କେହି କେହି ତାକୁ ଡରାଇ ଦିଅନ୍ତି, ବୁଢ଼ୀର ଭୟ ହୋଇଯାଏ । ଗାଈ କାଳେ ବେଳେ ବେଳେ ମାରା ପଡ଼ିଯା'ନ୍ତି । ଏଟା ପୁଣି ପ୍ରଥମ ଗର୍ଭ, ସେ କଇଁକୁ କୁଣ୍ଢେଇ କାନ୍ଦି ପକାଏ-ସତେ ଭଗବାନ ତତେ ସୁରୁଖୁରୁରେ ଉଦ୍ଧାର କରିବେ, ମା ବାଟମଙ୍ଗଳା, ତୁ ଜାଣୁ, ବୁଢ଼ୀ ଦିଅଁ ଦେବତାଙ୍କ ପାଖରେ ମାନସିକ କରେ ।

କଇଁର ଜନମଦିନ ପଡ଼ିଲା, ବୁଢ଼ୀ ଫିବର୍ଷ ପାଳି ଆସୁଛି, ଏଥର ଭଲ କରି କରିବ ବୋଲି ଭାବିଲା । ଏଟା ତ କଇଁର ଶେଷ ଜନମ ଦିନ । ତାପରେ ଛୁଆଟାର ହେବ । ଆଉ

କଣ କଇଁର କରିବକି ? କଇଁଲାଗି ବସିବସି ନୂଆ କନ୍ଥା ଖଣ୍ଡେ ସିଲେଇ କରିଛି । ଜନମଦିନ ଖାଲି, ଷଠୀଦିଉଛି ପୀଠରେ ରଖି ଛୁଆଇଁ ଦେବ, ଶୀତ ଦିନ ଆସିଲେ ଢାଙ୍କି ହେବ । ବିରି ଅଧସେରେ ପକାଇ ଚକୁଳିପିଠା ମୋଟା ମୋଟା କରି ତିଆରି କଲା, କଇଁଟା ଚକୁଳି ଖାଇବାକୁ ଭଲ ପାଏ, ସକାଳୁ ଘିଅ ଟିକିଏ ମାରି କଇଁଟାକୁ ସାହୁଘର ଗଡ଼ିଆରେ ବୁଡ଼ାଇ ଆଣିଲା, ପାଣିରେ କଇଁଟା ଛାଟିପିଟି ହେଉଥାଏ, ବୁଢ଼ୀ ପାଟିକଲା-'ଭଲ ବାର ଭଲ ଦିନରେ ଖାଲି ନିଆଁମୁହିଁ ମରିବୁ ।' ସାଙ୍ଗେ ସାଙ୍ଗେ ଜିଭ କାମୁଡ଼ି ପକାଇଲା, କାଳତୁଣ୍ଡି ସେ କି କଥା କହୁଛି, ପେଟରେ ଗୋଟାଏ ମାହାପ୍ରାଣୀ । କଇଁ ଆସୁ ଆସୁ ବାଡ଼ଟାରୁ ଗୋରୁଖିଆ ଡାଳଟେ ଛିଡ଼େଇ ଆଣି ଚୋବେଇ ପକେଇଲା, ବୁଢ଼ୀ ଡାଳଟା ଛଡ଼େଇ ନେଇ ପୁଣି ଗାଳି ଦେଲା- "ଟିକିଏ ସମ୍ଭାଳି ପାରୁନୁ, ପୂଜାଟା ସରୁ-ବଳେ ଖାଇବୁ, ଟିକିଏ ରହିଯା" । ଘରକୁ ଆସି କଇଁର ଛୋଟ ଛୋଟ ଶିଙ୍ଗରେ ବୁଲେଇ ବୁଲେଇ ସିନ୍ଦୁର ଗାର କାଟିଲା, ବେକ ଥୋଳାରେ ଦିଗାର ବି ମାରିଲା, ଆଖିରେ ଟିକିଏ ମୋଟା କରି କଳା ପିନ୍ଧେଇ ଦେଇ ଲମ୍ବା ଲାଞ୍ଜଟିଏ ଟାଣିଲା । ଘଡ଼ିଏ ଚାହିଁଲା କଇଁର ବଡ଼ ବଡ଼ ଆଖିକୁ ବେଶ ମାନୁଛି ; ମୁଣ୍ଡ ଉପରେ ବଡ଼ କରି ଚନ୍ଦନ ଟୋପାଟିଏ ଦେଲା । ବେକରେ ଫୁଲ ମାଳଟିଏ ପିନ୍ଧାଇ ଦେଇ ଷଠୀଦିଉଛି କଳସ ପାଖରେ ଘିଅ ଦୀପରେ ବନ୍ଦାଇ ଦେଇ, ଛୋଟିଆ ହୁଳହୁଳିଟେ ପକାଇ ଜୁହାର ହେଲା ବେଳକୁ କଇଁଟା କଳସ ଉପରୁ ଆମ୍ବ ଡାଳଟାକୁ ନେଇ ଚୋବାଇ ଦେଲା, ବୁଢ଼ୀ ପିଠା ଖଣ୍ଡେ ତା ପାଟିରେ ଦେଇ ହସି ପକାଇଲା ।

ବୁଢ଼ୀ କଇଁର ଖାଇବା ପିଇବାରେ ଏଣିକି ଭାରି ଯତ୍ନ ନିଏ । ବେଶୀ ଆଉ ଘରୁ ଛାଡ଼େନି, ଯଦି ଖୋଲିଦେବ ତା ସାଙ୍ଗରେ ନିଜେ ଯାଇ ଘଣ୍ଟେ ଚରାଇ ଘରକୁ ନେଇ ଆସିବ । ଦିହ ଓଜନ ଅଛି, କିଏ କାଳେ ଦି'ପାହାରେ ଚଢ଼େଇ ଦେବ । ବୁଢ଼ୀର ଛୁଆ ପିଲା ହେଇନି, ଗର୍ଭଯାତନା କଣ ଜାଣେନା, ମାଇପଙ୍କଠାରୁ ବହୁତ କଥା ଶୁଣିଛି, କଇଁକୁ ଘଣ୍ଟା ଘଣ୍ଟା ବସି ବିଞ୍ଚିବ । ଏଣିକି ରାତିରେ ସେ ଯେଉଁଠି ଶୁଏ, ପାଖରେ କଇଁକୁ ବାନ୍ଧେ । ଖାଇବା ପିଇବା ହୁସିଆର କରିଦିଏ, କଇଁ ଲାଗି ପ୍ରତିଦିନ ପଡ଼ି ଉଠି ଗରମ ଭାତ ରାନ୍ଧେ । ତା ଲାଗି ତାର ବି ପଖାଳଖିଆ ବନ୍ଦ ହୋଇ ଯାଇଛି । ତାର ଏ ଢଙ୍ଗ ଦେଖି ଗାଁ ମାଇପିମାନେ ଫୁସୁରୁ ଫାସୁରୁ ହୁଅନ୍ତି-କଇଁ ପଟରେ ହେଇଛି ନା ବୁଢ଼ୀ ପେଟରେ ହେଇଛି ।

କୁଅପାଖ ଦୂବ ଘାସ ମୂଳରେ ଗାଧୋଇ ସାରି ପାଣି ଢାଳେ, ଘାସଗୁଡ଼ାକ ଟିକିଏ ବେଶୀ ବେଶୀ ବଢ଼ିଯାଉ, ଛୁଆଟା ସେତେବେଳେକୁ କଣ ଖାଇବ ? ପୁରୁଣା ଧାନ ଦି ଟଙ୍କାର ଆଣି କୁଳୁଚି କରି ରଖିଛି, ପୋଖତୀଟା ଦିହ କାଳେ କଣ ବିଗିଡ଼ିଯିବ, ସରୁ ଚାଉଳ ମୁଠିଏ ଠେକିରେ ପୁରେଇ ଶିକାରେ ସାଇତିଛି. ପିଠା ଖଣ୍ଡେ କରି ଛୁଆଟା ପାଟିରେ ଦେବ । କିଏ ଯଦି କଇଁ ପେଟରେ ହେବା କଥା ପଚାରେ ବୁଢ଼ୀ କଥାଟାକୁ ବାଆଁରେଇ ଦିଏ । କେତେ ପ୍ରକାର ଲୋକ ଅଛନ୍ତି, କଣ ଅସଜସଜ କରି ପକାଇବେ ।

ବେଳେ ବେଳେ ବିଛଣାରୁ ଉଠି କଇଁ ପେଟକୁ ବୁଢ଼ୀ ଅଣ୍ଡାଳେ, ପେଟ ପାଖରେ କାନପାରେ, ତାକୁ ଜଣାଯାଏ ଛୁଆଟା ଯେମିତି ନିଃଶ୍ୱାସ ନେଉଛି, କଇଁ ଧଡ଼ପଡ଼ ହୋଇ ଉଠେ, ବୁଢ଼ୀ ଆଉଁସି ଦେଇ ଶୋଇବାକୁ କହେ-'ଶୋଇପଡ଼ ଲୋ ପୋଡ଼ାମୁହିଁ। ଅନିଦ୍ରା ହେଲେ ପେଟରେ ଛୁଆଟା ହନ୍ତସନ୍ତ ହେବ।' ବୁଢ଼ୀ କଇଁ ପେଟକୁ ଲକ୍ଷ୍ୟକରେ, ଆଠମାସ ହେଲାଣି ପେଟଟା ତ ବାହାରୁନି, ପନ୍ଥା ଯାଇ ଚମରେ ଲାଗିଛି। ହଅ, ଚମ୍ପାନାନୀ କହୁଥିଲା ସମସ୍ତଙ୍କର ଦିହ ବାହାରେ ନାହିଁ, ଜଣ ଜଣଙ୍କର ଏମିତି ହୁଏ, ବୁଢ଼ୀ ଷଠୀଘର ଏକୋଇଶିଆ ଲାଗି ଆଜହୁଁ ତିଆରି ହେଉଛି, ଯିଏ ଯାହା କହୁ ପଛେ ଏକୋଇଶିଆକୁ ଦିଜଣ ବ୍ରାହ୍ମଣ ଖୋଇବ, ପିଠା କରି ଗାଁରେ ବାଣ୍ଟିବ, ନାରାୟଣ ପୂଜାଟିଏ ନ କରିବ କିମିତି। ବୁଢ଼ୀ ଚୁଲିମୁଣ୍ଡ ଖୋଳି ପୋତିଥିବା ଗୋଟିରୁ ସବୁ ପଇସା କାଢ଼ିଛି, ହାଟକୁ ପଇସା ଦେଇ ପୁରୁଣା ବିରି କିଣି ଆଣିଛି, ଚାଉଳ ବି କୁଟି ରଖିଛି। ବାକି ଯାହା ଦରକାର ଶେଷ ବେଳକୁ ଦେଖିବ, ଯଦି ହୁଏ ଟଙ୍କେ ଦିଟଙ୍କା ଧାର କରିବ, କୁନି ବାଛୁରୀ ଲାଗି ନୂଆ ଘୁଙ୍ଗୁର ଆଣି ରେଶମି ସୂତାରେ ଗୁନ୍ଥି ରଖିଛି। ବୈରାଗୀ ଗୁଣିଆଠାରୁ ବେଶୀ କିଛି ଦେଇ ଅସଲ ଡେଉଁରିଆଟା ବି ସଂଗ୍ରହ କରିଛି, ଡେଉଁରିଆ ଦିହରେ ଥିଲେ ଡାଆଣୀ ପିଶାଚୁଣୀ ଶହେ ହାତ ଦୂରରେ ରହିବେ, ଆଉ କଣ ? ହଁ, ପଦ୍ମପତର ଶୁଖେଇ ବାଉଁଶ ନଳରେ ପୁରେଇ ଟାଙ୍ଗିଛି, ଗୁହାଳ ଚାରିପାଖରେ ଲୁହା କଣ୍ଟା ମାରି ଭଲ କରି କିଳେଇ ଦେଇଛି, କେହି ଯେମିତି ତ୍ରିସୀମା ମାଡ଼ି ପାରିବେନି।

କଇଁକୁ ଭଲକରି ସାଦ ଖାଇବାକୁ ବୁଢ଼ୀ ଦେଲା, ବିଧିଟା ନ ପାଳିବ କେମିତି ? ଛୁଆଟା ଶେଷକୁ ଟାଉକୀ ହେବ, ମାଆର ଆଶା ମୁତାବକ ଖାଇବାକୁ ନ ଦେଲେ ଛୁଆ ପାଟିରୁ ନାଳ ଗଡ଼େ, ଓଲିଆ ହୁଏ। ସେ ଶୁଣିଛି। ବୁଢ଼ୀ ସରୁ ଚାଉଳରେ ନଡ଼ିଆ ଦେଇ ଖିରି କଲା। କଇଁ ଚକୁଳି ପିଠା ଭଲ ପାଏ। ଚକୁଳି ଦିଖଣ୍ଡ ଓଲଟାଇଲା, ବାଇଗଣ କଦଳୀ ପକାଇ ଘାଣ୍ଟ ତରକାରୀଟିଏ କଲା, ବେଶୀ ରାଗ ଦେଲେ କାଳେ ପେଟ କଣ ହେବ, ଭଲ ଭଲ ଦୂବଘାସ ପାଛିଏ ଧୋଇଧାଇ ଆଣିଲା, ବାରମିଶା ପତ୍ରମୁଠିଏ ବି ଥୋଇଲା, ଗରମ ପେଜ ମୁନ୍ଦିକରେ କାଣ୍ଡିଆ କୁଣ୍ଡା ମୁଠିଏ ପକାଇଲା। ଏଥର ବୁଢ଼ୀ କଳରୁ ଧାନ କୁଟେଇ ଆଣିଛି, କୁଣ୍ଡା ଗଣ୍ଡିକ ଭଲ ହେବ, ତାକୁ କପଡ଼ା ଛଣା କରି ଖରାରେ ଦେଇ ରଖିଛି, ଛୁଆଟାର ଖାଇବାକୁ ସୁବିଧା ହେବ। କଇଁକୁ ବଳେଇ ବଳେଇ ଖୋଇଲା, କଇଁଟା ଖାଇ ଶୋଇ ପଡ଼ିଲା। ବୁଢ଼ୀ ଆଉଁସି ଦେଉ ଦେଉ କହିଲା-"ଷାଠିଏ ନିଶ୍ୱାସ ନେ ଲୋ ମା। ଦିହ ତ କଣ ହେଇ ଯାଉଥିବ, ଦିନ ତ ପାଖେଇ ଆସିଲା, ବାବା ବାଟକେଶ୍ୱର, ତୁମକୁ ମୋ ଝିଅ ଲାଗିଲା।"

ମାସେ ଗଡ଼ିଗଲା, ଦି'ମାସ ଗଲା, କଇଁଟିକିଏ ଶୋଇପଡ଼ିଲେ କି ଛାଟିପିଟି ହେଲେ ବୁଢ଼ୀ ଛାତି ଭିତରଟା ଦାଉଁ ଦାଉଁ ପଡ଼େ, ଆଜି ହେବ କି କଣ ? ବୁଢ଼ୀ ବାହାରକୁ ଏଣିକି ତାକୁ ମୋଟେ ଛାଡ଼େନି। କଇଁ ଝାଡ଼ିଝୁଡ଼ି ହୋଇ ଆଗପରି ଖିଆପିଆ କରେ,

କାହିଁ ହେଲାନିତ ?

ଆହୁରି ମାସେ ବି ଗଡ଼ିଲା, ବୂଢ଼ୀ ମନେ ମନେ ପ୍ରମାଦ ଗଣିଲା, କିଛି ବୁଝି ପାରିଲାନି । ଏକି କଥା, ମତେ ଆସି ତା ଘରକୁ ଡାକିନେଲା, ମୁଁ ବି ଶୁଣି ଆଶ୍ଚର୍ଯ୍ୟ ହେଲି, ହୁଏତ ଛୁଆଟା ମରି ଯାଇଛି, କି ପ୍ରସବ କରିବାରେ କୌଣସି ଅସୁବିଧା ହେଉଛି । ବଡ଼ ବିପଦକଥା, ବୂଢ଼ୀ ଛୋଟ ଛୁଆଙ୍କ ଭଳି କାନ୍ଦି ପକାଇଲା । କଇଁକୁ ନେଇ ପଶୁଡାକ୍ତରଙ୍କୁ ଦେଖାଇବା କଥା ସ୍ଥିର ହେଲା, ମୁଁ ସେ ଭାରଟା ନେଲି ।

କଇଁକୁ ଧରି ଫେରିଲି । ବୂଢ଼ୀ ଘରକୁ ତାକୁ ପଠାଇଦେଇ ମୁଁ ଘରକୁ ଗଲି । ବୂଢ଼ୀ ଧାଇଁ ଧାଇଁ ଆସିଲା, ତା ଆଗରୁ ମୁଁ ବୁଲି ପଳାଇ ଥିଲି । ଜାଣି ଜାଣି ମୁଁ ଡେରିକରି ଆସିଲି । ବୂଢ଼ୀ ଆମଘରେ ବସି ବସି, ଯେମିତି ହେଉ ମତେ ପଠାଇବାଲାଗି ଘରେ କହିଦେଇ ଗଲା । ମୁଁ ପହଞ୍ଚିଲାକ୍ଷଣି କଇଁ ବିଷୟରେ ଜାଣିବା ପାଇଁ ସମସ୍ତେ ଘେରିଗଲେ । ମୋ ଛାତିଭିତରୁ ଦୁଆଏ ଅତଡ଼ା ଖସିଲାପରି ନିଶ୍ୱାସଟା ବାହାରି ଆସିଲା । ମୁଁ ଭାଙ୍ଗିଲା ଭାଙ୍ଗିଲା ଗଳାରେ କହିଲି-କଇଁର ଛୁଆ ହେବାର ନଥିଲା କି ତାର ଛୁଆ ହେବ ନାହିଁ ।

ସମସ୍ତେ 'ଆଏଁ' କରି ପାଟିଟେ କରି ଉଠିଲେ । ମାଆ କହିଲା-"ନିଅଁଶୀ ବଂଶଟା-ଅଭିଶାପ ପଡ଼ିଛି-କଇଁଟାକୁ ସେଠିକି ପଠାଇ ମୁଁ କେତେ ଭୁଲ ନକଲି ।"

ଦାଣ୍ଡ ଦୁଆରେ ହଠାତ୍ କଣ ଶବ୍ଦଟାଏ ହେଲା, ଆମେ ଧାଇଁଗଲୁ । ଖୁଡ଼ୀ ମୋର ଉଞ୍ଚ ପଥର ପିଣ୍ଡାରୁ ଓହ୍ଲାଇ ଯାଉଁ ଯାଉଁ ଗଡ଼ି ପଡ଼ିଛି । ନାରୀର ହୃଦୟ ଧରି ମାଆ ହେଲାପରେ, ବୂଢ଼ୀମାଆ ହେବାର ସ୍ୱପ୍ନରେ ସେ ବିଭୋର ହୋଇ ପଡ଼ିଥିଲା । ଆଃ, କଣ ହେଲା ?

ଖୁଡ଼ୀ ମୋର ମୋ ମାଆ କୋଡ଼ରେ ମୁଣ୍ଡ ଗଡ଼େଇ ମୋ କୁନି ଝିଆରୀ ମମିର ହାତକୁ ଚିପିଧରି ପାଗଳୀଙ୍କ ଭଳି କହି ପକାଇଲେ -"ମୁଁ ନିଅାଁଶୀଲୋ ମାଆ, ମୋର ବଅଁଶ କେଉଁଠୁ ଆସିବ ? ତୁମ କଇଁକୁ ତୁମେ ନେଇଯାଅ-ମୁଁ ତ ମାଆ କେବେ ହୋଇ ନଥିଲି-ମୁଁ ମାଆ ହେବିନି-ମମି, ମୁଁ କଇଁ ସୁଆଗୀ ଆଉ ହେବିନି-ମୁଁ ମାଆ ନୁହେଁ..."

ସେ ଆଉ କିଛି କହି ପାରିଲା ନାହିଁ । ମୁହଁକୁ କୋଡ଼ରେ ମାଡ଼ି ଧରିଲା । ମମିଟା ଭୋ ଭୋ ହୋଇ କାନ୍ଦି ପକାଇଲା । ସମସ୍ତଙ୍କ ଆଖିରୁ ଧାର ଖସି ଖସି ଆସୁଥିଲା ।

ମୁଁ ଆଖି ବୁଜିଲି ।

•••

# ଝାନ୍‌ସିଂ

ବୁଢ଼ା ଲଛମନ୍ ସିଂ ସାଙ୍ଗରେ ମୁଁ ଜୋରସୋର୍‌ରେ ଦୋସ୍ତିଟା ଜମେଇ ନେଲି । ତା ପାକଲା ନିଶ, ପାକୁଆ ପାଟି, ମୁଡ୍‌କି ହସ, ଧରଡ଼ା ଚମ ଭିତରେ ଅବଶ୍ୟ ରୀତିମତ ଗୋଟାଏ ଆକର୍ଷଣ ଥିଲା । ତଥାପି ତାର ପୋଷା ଭାଲୁ ଝାନ୍‌ସିଂ ପାଇଁ ମୁଁ ବେଶୀ ତା ପିଛା ଧରିଥିଲି । ମୋ ବସାଘର ଆଗ ଚତରା ବରଗଛ ତଳେ ଲଛମନ୍ ତା ବସା ଠିକ୍ କରିଥିଲା । ପ୍ରାୟ ଚାରିମାସ ଯାଏଁ ଆମେ ପଡ଼ୋଶୀ ବନିଯାଇଥିଲୁ । ପହିଲୁ ପହିଲୁ କେତେଦିନ ଲଛମନ୍ ମୋ ଘର ଆଗରେ ଗୁଣୁଗୁଣୁ ହେଇ ଚାଲିଥାଏ । ପଛେ ପଛେ ତାର ଭାଲୁ ଝାନ୍‌ସିଂ ଗୋଡ଼ର ଘୁଙ୍ଗୁରକୁ ଝୁଣୁଝୁଣୁ କରି ଚାଲିଥାଏ । ଲଛମନ୍ ପାଟିରେ ସବୁବେଳେ ଗୀତ ଲାଗି ରହିଥାଏ । ଗୀତଟା ଅବଶ୍ୟ ସବୁବେଳେ ଭଲକରି ଶୁଭେନା । ଗୁଣୁଗୁଣୁ ରାଗିଣୀକୁ ଶୁଣି ଶୁଣି ଭାରି ଅଳିଅଳରେ ଝାମ୍ପୁରା ଦେହକୁ ହଲେଇ ହଲେଇ ଝାନ୍‌ସିଂ ଝୁଲିଝୁଲି ଆଗାଏ । ଦି ଚାରିଟା ବାରବୁଲା କୁକୁର ଭୋ ଭୋ ହୋଇ ଗୋଡ଼ାଇଥାନ୍ତି । ଛୁଆ ବି ଦଶ ପଚିଶ ତାଳି ପିଟି ପିଟି ହୋ ହା ପାଟିକରି ପିଛା ଧରିଥାନ୍ତି । କେତେବେଳେ କେମିତି ଛୋଟ ଛୋଟ ଟେକା ଖୁଣ୍ଟି ଉପରକୁ ଫିଙ୍ଗନ୍ତି । ଝାନସିଂର ଖାତିର ନଥାଏ । କୁକୁରଗୁଡ଼ାକ ବେଶୀ ଲାଗି ଆସିଲେ ଟିକିଏ ବୁଲିପଡ଼ି ଖେଙ୍କାରି ଦିଏ । ଛୁଆଏ ଦାଣ୍ଡିଆ ମାରି ପଳାନ୍ତି । ଲଛମନ ଗୀତ ବନ୍ଦ କରି ପଛକୁ ଅନାଏ । ଝାନସିଂ କୁଁ କୁଁ ହେଇ ଲଛମନ ପାଖକୁ ଦଉଡ଼ି ଆସେ । ତା' ମୁଣ୍ଡ ଉପରେ ସୁନ୍ତାଣି କାଟିଲା ଭଳି ଦୁଇ ପାଖକୁ ବାଳ ଓହଳି ପଡ଼ିଥାଏ । ଲଛମନ୍ ହାତରେ ଝାନସିଂର ବାଳକୁ ଟିକିଏ ଆଉଁଷି ଦିଏ । ମୁଁ ଘରୁ ବାହାରି ଆସି ଦୁଆର ବନ୍ଧକୁ ଆଉଜି ଅନେଇ ଥାଏଁ । ଲଛମନ୍ ଗୀତ ଶୁଣିଲେ ଜମ୍ପା କାହିଁକି ରହିପାରେ ନା । ମତେ ଦେଖିଲେ ତାର ଓସାରିଆ ଓଠ ହସରେ ପୋତି ହୋଇ ପଡ଼େ । ସେ ବେଶୀ ବେଶୀ ରାଗିଣୀ ଉଠାଏ । ପଟା ପଟାକିଆ ଲୁଙ୍ଗି ଅଣ୍ଟାରୁ ତମ୍ବଗୁଟା ଓହଳିଥାଏ । ବେକଚିପା କଳା କୋଟ ଖଣ୍ଡକରେ ପୁଳା ପୁଳା ତାଳି ପଡ଼ି କିମ୍ଭୂତକିମାକାର ଦିଶେ । ମୁଣ୍ଡର ଧଳା ଟାଇଆଟାରୁ ପଛକୁ ପ୍ରାୟେ ଦେଢ଼ହାତ ଚଦର ଲମ୍ବିଥାଏ । ଗୋଟେ ହାତରେ ଭାଲୁର ଦଉଡ଼ି ଆରହାତରେ ବାଡ଼ି ଖଣ୍ଡକ ଧରି ଲଛମନ ଗୀତ ଗାଇ ଗାଇ ଗଛ ମୂଳକୁ ଚାଲିଯାଏ ।

ଝାନସିଂର ନାଚ ଥରେ ଦୁଇଥର ନୁହେଁ ବହୁତଥର ମୁଁ ଦେଖିଛି । ଆଖ ପାଖରେ କେଉଁଠି ଡମ୍ବରୁ ଡିବି ଡିବି ବାଜିଲାତ ଯେତେକାମ ଥାଉ ସବୁ ଛାଡ଼ି ଛୁଡ଼ି ମୁଁ କାହିଁକି ପଳାଏ ? ଲଛମନ୍ ମତେ ଦେଖିଲେ ଗୀତକୁ ବେଶୀ ବେଶୀ ଲହରାଇ ନାଚକୁ ଭଲକରି ଜମାଇଦିଏ । ଝାନସିଂର ବେଶ ଅଦ୍ଭୁତ ପ୍ରକାରର । ମୁହଁରେ ଚମଡ଼ାର ଫିତା କଷା ହୋଇଥାଏ । ନାକ ଫୋଡ଼ା ହୋଇ ତା ଭିତରେ ରଙ୍ଗୀନ୍ ସୁତୁଲିର ଦଉଡ଼ି ପଶିଥାଏ । ବେକରେ ଚଉଡ଼ା ନାଲି ଫିତା ଭିତରେ ଅଧା ଲୁଚିଗଲେ ବି ନାଚବେଳେ, ବେଳେବେଳେ ରୁମକୁ ମାଡ଼ି ମାଡ଼ି ଉପରକୁ ଉଠିପଡ଼େ । ବେକତଳ ଧଳା ଗାର ଉପରେ ପୋହଳା ରଙ୍ଗର ଫିତା ଦୂରକୁ ଚକ୍ ଚକ୍ କରେ । ଫିତା ତଳକୁ ଘୁଙ୍ଗୁର ମାଳ ଝୁମ୍ ଝୁମ୍ ବାଜିଉଠେ । ଅଣ୍ଟାରେ ଫିତା ଜାଲ ବୁଣିଲା ଭଳି ଛନ୍ଦାଛନ୍ଦି ହୋଇ ରୁମକୁ ଭିଡ଼ି ଧରିଥାଏ । ଗୋଡ଼ରେ ଘୁଙ୍ଗୁର ତାଳେତାଳେ ବାଜିଉଠେ । ଲଛମନ ରାଗିଣୀ ଧରି ଡମ୍ବରୁ ଡିବି ଡିବି ପିଟେ । ଝାନସିଂ ଆଗ ଦୁଇ ଗୋଡ଼କୁ ମଣିଷ ଭଳି ଟେକି ପଛ ଦୁଇଗୋଡ଼ରେ ତାଳଦେଇ ନାଚେ । ଗୋଡ଼ର ନଖଗୁଡ଼ାକ ଭୟଙ୍କର ଦିଶିଲେ ବି ସେ ଅତି ସନ୍ତର୍ପଣରେ ସେଗୁଡ଼ାକ ନିଜ ଦେହରେ ଲଗାଇ ରଖିଥାଏ । ମଝିରେ ମଝିରେ ଲଛମନ୍ ପାଟିକରି ଉଠେ । ବାଡ଼ିରେ ଝାନସିଂର ମୁଣ୍ଡରେବି ଟିକିଏ ଠୋକର୍ ମାରେ । ଝାନସିଂ ଘୁଁ ଘୁଁ ହୋଇ ଜବାବ୍ ଦିଏ । ବେକରେ ତାଳ ଦେଇ ଘୁରି ଘୁରି ନାଚିଯାଏ । ଲଛମନ୍ ନିଶକୁ ଉଠେଇ ପକେଇ ଗୀତ ଧରିଥାଏ– ''ଭାଲୁ ନାଚେ– ଝୁମର ନାଚେ– କୈସା ନାଚ– ମଧୁର ନାଚ– ଝୁମକେ ନାଚେ– ପୈର ଉଠାଓ ।'' ଲଛମନ ଝାନସିଂ ଗୋଡ଼ରେ ବାଡ଼ି ବଜାଏ । ଝାନସିଂ ପାଟିକରି କୁଦି କୁଦି ନାଚିଯାଏ । ଲଛମନ ଆଦେଶ ଦିଏ –''ବାବୁ ଲୋଗ୍‌କେ ସାମନେ ସିତାର ବଜାଓ ।'' ଝାନସିଂ ଦୁଇଗୋଡ଼ ଟେକି ଗୋଟାଏ ଗୋଡ଼ରେ ନଖରେ ସିତାର ବଜାଇବା ବାହାନା କରେ । ପୁଣି ପରେ ପରେ ଲଛମନର ଗୀତ ଅନୁସାରେ ଚରଖା କାଟେ । ଲଛମନ ଗୀତର ଧିସା ଧରିଥାଏ – ''ଦାରୁ ପିକେ ଚଲୋ ବେଟା–ଶଶୁର ଘର ମେ ଯାନା ଭାଲୁ ।'' ଝାନସିଂ ମଦୋତିଭଳି ଢଳି ଢଳି ଚାଲେ । ପିଠିର ରୁମ ଗୁଡ଼ାକ ଦାଲୁ ଦାଲୁ ହେଇ ଏକଡ଼ ସେକଡ଼ ହେଉଥାଏ । ପୁଣି ନଇଁ ନଇଁ ବହୁ ସାଜେ । ଦେଖଣାହାରିଏ ଖେଁ ଖେଁ ହସି ଉଠନ୍ତି । ଖେଳର ଅସଲବେଳ ଆସିଯାଏ । ଲଛମନ୍ ଚିରା କୋଟକୁ ଉତାରି ନେଇ ପାଇକଛା ଭିଡ଼େ । ଜଙ୍ଘରେ ଫୁଟୁକି ମାରି ଦୁଇହାତ ବଢ଼ାଏ । ଝାନସିଂ ପଛଗୋଡ଼ରେ ଠିଆ ହୋଇ ଆଗ ଗୋଡ଼ରେ ଲଛମନର ଦୁଇହାତକୁ ଧରେ । ପ୍ରଥମେ ଟିକିଏ ଅଳ୍ପ କରି ଠେଲାଠେଲି ଲାଗନ୍ତି । ଲଛମନ୍ ହଠାତ୍ ହାତ ଖସାଇ ନେଇ ଭାଲୁକୁ କୁଣ୍ଢେଇ ପକାଏ । ଝାନସିଂ ବି ଲଛମନ୍‌କୁ ଭିଡ଼ି ନିଏ । ତାପରେ ଗଡ଼ାପଡ଼ା ଚାଲେ । ଦେଖିଲା ଲୋକ ଆଖିରୁ ଲୁଲୁଲୁଳିଆ ପୋକ ଖସିପଡ଼େ । ଶେଷରେ ଲଛମନ୍ ବସି ପଡ଼େ । ଝାନସିଂ ସାହେବି ଠାଣିରେ ସମସ୍ତଙ୍କୁ ସଲାମ୍ ବଜାଏ । ଦୁଇହାତରେ ବୁଲି ବୁଲି ନମସ୍କାର କରେ । ପେଟ ଦେଖାଇ ତଳେ ପଡ଼ି ପଇସା ମାଗେ । ଲଢ଼ି ଲଢ଼ି ଦମ୍ ଛୁଟି ଯାଇଥାଏ । ସଅଁ ସଅଁ ନିଃଶ୍ୱାସ ମାରେ । ନିଃଶ୍ୱାସରେ ଧୂଳି ଉଡ଼ିଯାଏ । ଲଛମନ୍ ପାଟିକରେ– ''ମାଗୋ ବେଟା, ପେଟକେ ଲିୟେ

ହାତ ପତାଓ-ବାବୁ ଲୋଗୋଁକା ଦୁଷମନ ମରେ-ଲେଙ୍ଗଡ଼ା ବନେ ।'' ଝାନସିଂ ଉଠି ହାତ ପତେଇ ମାଗୁଁ ମାଗୁଁ ମଲା ଭଳି ପଡ଼ି ରହେ । ପୁଣି ଉଠିପଡ଼ି-ଛୋଟେଇ ଛୋଟେଇ ଚାଲେ ।

ମୋର ଭାରୀ ଇଚ୍ଛା ଥିଲେବି ଲଛମନ ସାଙ୍ଗରେ ମୁଁ କଥାବାର୍ତ୍ତା କରି ନଥାଏ । ସେଦିନ ଗୋଟାଏ ସୁଯୋଗ ଜୁଟିଗଲା । ଧୂମ ତୋଫାନ ପରେ ହଠାତ୍ ବର୍ଷା ଆରମ୍ଭ ହୋଇଗଲା । ମନଟା ମୋର ଗୋଳାଇ ଘାଣ୍ଟି ହେଲା । ଗଛମୂଳଟାରେ କିମିତି ଲଛମନଟା ପଡ଼ିକରି ରହିବ ? ମୁଁ ଯାଇ ମୋ ବାରଣ୍ଡାକୁ ଡାକି ଆଣିଲି । ଲୁଗାପଟା ଦି ଖଣ୍ଡ ତାର ଅଧାଅଧି ପ୍ରାୟ ଭିଜି ଯାଇଥାଏ । ଖଣ୍ଡେ ଖଜୁରୀପଟିଆ ବିଛେଇବା ପାଇଁ ଲଛମନ୍‌କୁ ଦେଲି । ଭାଲୁର ବିଛଣା ଦରକାର ଅଛିକି ନାହିଁ ପଚାରିବାରୁ ଲଛମନ୍‌କୁ ହସିଲା- "ବାବୁଜୀ ଉସ୍‌କୋ ତୋ ଖୋଦାନେ କମଲ ଦିଆ ହେ ।" ସେହିଦିନ ଠାରୁ ସବୁଦିନେ ଲଛମନ ମୋ ବାରଣ୍ଡାରେ ରହେ । ଝାନସିଂ ବି ତା ପାଖରେ ଶୁଏ । ସନ୍ଧ୍ୟାପରେ ଲଛମନ ମୁଁ ବସି ଦୁଃଖସୁଖ ହେଉଁ । ତାପରେ ଆସ୍ତେ ଆସ୍ତେ ଝାନସିଂ ବିଷୟରେ ମୁଁ ବହୁତ କଥା ଜାଣିନେଇଛି । ଝାନସିଂ ଦୁଇଓଳି ରୋଟି ଖାଏ । ଲଛମନ୍ ବଡ଼ ବଡ଼ ରୋଟି କରି ଟିକିଟିକି କରି ପକାଏ । ତାପରେ ଗୁଡ଼ଦେଇ ତାକୁ ଗୋଳାଇ ଦିଏ । ଝାନସିଂ ଆରାମରେ ସେତକ ଖାଇଦିଏ । ଖରାବେଳେ ଦିନେ ଦିନେ ଲଛମନ୍ ଉଇହୁଙ୍କା ପାଖରେ ତାକୁ ଛାଡ଼ିଦିଏ । ମୁହଁରେ ଖୋଳି ଖୋଳି ଝାସିଂ ହୁଙ୍କା ଭିତରକୁ ଗଳିଯାଏ । ଉଇଦିଟା ଖାଇଲେ ତାର ଭାରି ଆନନ୍ଦ । ଲଛମନ ବି ମନେମନେ ଖୁସି ହୁଏ । ଝାନସିଂକୁ ସେ ଯେତେବେଳେ କିଣିଥିଲା ତାର ରୁମ ଉଠି ନଥିଲା । ଦୁଧପେଇ ସେ ତାକୁ ବଡ଼ାଇଛି । ଲଛମନର ଘର ନେପାଳରେ । ସେ ନେପାଳର କଥା ବହୁତ କହି ବସେ । ନେପାଳରେ ଭାରି କଡ଼ା ଶାସନ । କୌଣସି ଜାନୁଆର୍ ବାହାରକୁ ଛାଡ଼ିବ ନାହିଁ । ଧରା ପଡ଼ିଲେ ହାତରେ ପାଞ୍ଚ୍ ସେରକା ଶିସା କଡ଼ା ଲଗ୍ ଜାତା ହେ । ସେ ଓଡ଼ିଶାର ଜଙ୍ଗଲରୁ ଝାନସିଂକୁ ପାଇଛି । ନୀଳଗିରି ପାହାଡ଼ରୁ ସେ ତାକୁ ଆଣିଥିଲା । ଥରେ ବାତ ବେମାରି ହେଲା ଯେ ଝାନସିଂ ମରିଯାଇଥାନ୍ତା । ରାତି ରାତି କୋଡ଼ରେ ଧରି ସେ ସେବା କରିଛି । ଝାନସିଂର ମୁହଁକୁ କୋଡ଼ରେ ଧରି ଲଛମନ୍ ତା ମୁହଁରେ ମୁହଁ ଲଗାଇ ଗେହ୍ଲା କରେ । ଝାନସିଂ ଘୁଡୁ ଘୁଡୁ ହୋଇ ମଟ ମଟ କରି ଚାହିଁଥାଏ । ଭାଲୁକୁ ଜର ଆସେ ବୋଲି ସେ ଘୁମୁରେ ମୁଁ ଶୁଣିଥିଲି । ଲଛମନ୍‌କୁ ପଚାରିଲେ ସେ ହସେ । ସବୁ କଥାରେ ତାର ହସ । ସେ କହେ – " ଝୁଟା ବାତ୍ ବାବୁଜୀ । ଘୁଡ଼ଘୁଡ଼ ନହି କରନେ ସେ ହଜମ ନହିଁ ହୋତା- ଉସ୍‌କା ଖାନା ନହିଁ ପଚ୍‌ତା, ଓ ଉସ୍‌କା ଆଦତ ହେ ।" ଝାନସିଂର ଦାନ୍ତ କାହିଁକି ଭାଙ୍ଗି ଦେଇଛି ପଚାରିଲେ ସେ କହେ- ଅଦିମ୍‌କୋ ବିଶ୍ୱାସ ନହିଁ ହେ- ପାଲ୍‌ପୋଷ୍‌କର ରଖନେ ବାଦ୍ ଓଭି ଗଲେ ପର ଚୋଟ ମାରତା । ଓ ତ ଜାନୁଆର ହେ । କ୍ୟା ବିଶ୍ୱାସ ।" ଝାନସିଂର ଆଗ ଚାରିଟା ଦାନ୍ତକୁ ସେ ଉପାଡ଼ି ଦେଇଛି । ତାର ରୁମକୁ ବି ସେ କାଟି ପକାଏ । ବର୍ଷା ଦିନେ ପୁଣି ରୁମ ବଢ଼ିଯାଏ । ଲଛମନ୍ ପାଟିରେ ଟିଟିକାରୀ ଫୁଟାଏ, ଝାନସିଂ ଠିଆ ହୁଏ । ଲଢ଼ିବା ପାଇଁ ଲଛମନ୍ ହାତ ବଢ଼ାଏ । ଝାନସିଂ ଆଗ ଗୋଡ଼ ବଢ଼ାଇ ଆଗକୁ ଆସେ । ଲଛମନ୍ ଆସ୍ତେ ଆସ୍ତେ ଅଣ୍ଟାରୁ

ବିଖଣ୍ଡ କାଠି କାଢ଼ି ଝାନସିଂର ଆଗ ଗୋଡ଼ କାଖ ସନ୍ଧିରେ ଖୋସିଦିଏ । ତାକୁ ଭାରି କୁତୁ କୁତୁ ଲାଗେ । ସେ କାଠିକୁ ଜାକି ଖାଲି ଡିଆଁ ମାରେ । ମୁଁ ହସି ହସି ଗଡ଼ିଯାଏ । ଲଛମନ୍ ଆସ୍ତେ ଆସ୍ତେ ତାକୁ ପାଖକୁ ଆଣି ମୁଣ୍ଡରେ ମୁଣ୍ଡ ଲଗାଇ କହେ- "ବଚପନ୍ ମେ ବଡ଼ା ବଦମାସ୍ ଥା । ଅବ୍ ତୋ ମେରା ବେଟା ହୋ ଗୟା ହେ- ମେରେ ଲିୟେ ଜାନ୍‌ପର୍ ଚୁତାର ଦେତା ହେ ।"

ମାସ ମାସ ଧରି ଲଛମନ୍ ଓ ଝାନସିଂକୁ ମୁଁ ଦେଖି ଆସିଛି । ଯେତେବେଳେ ଦେଖ ଲଛମନ ଗୁଣୁ ଗୁଣୁ ହୋଇ କଣ କହୁଥିବ । ଝାନସିଂକୁ କେବେ ଆଉଁଷୁଥିବ ତ କେବେ ଗାଳି ଦେଉଥିବ । ଦିନେ ଦିନେ ଲଛମନକୁ ମୁଁ ରାତିରେ ଖାଇବାକୁ ଡାକେ । ସେଦିନ ଝାନସିଂ ପାଇଁ ମତେ ମଧ୍ୟ ରୋଟିର ବ୍ୟବସ୍ଥା କରିବାକୁ ପଡ଼େ । ରାତିରେ ମଧ୍ୟ ବେଳେବେଳେ ଲଛମନ ଉପାସ ରହେ । ଯଦି ରୋଜଗାର ଖୁବ୍ କମ ହୋଇଥାଏ, ଝାନସିଂକୁ ରୋଟି କରି ଖାଇବାକୁ ଦିଏ । ଆପେ ଓପାସ ରହିଯାଏ । ପଚାରିଲେ କହେ-''ବେଟା କୋ ଖାନା ଦେନା ବାପକା କାମ୍ ହେ ବାବୁଜୀ ।'' ଦିନ୍‌ଭର୍ କିତନା ତକ୍‌ଲିଫ ବିଚାରା ଉଠାତା ହେ ।" ସନ୍ଧ୍ୟାପରେ ଝାନସିଂ ଲଛମନ କୋଡ଼ରେ ଶୋଇ ଘୁଡୁଘୁଡୁ ହୁଏ । ଲଛମନ୍ ଛୋଟ ଛୁଆକୁ ରଜା ଘର କାହାଣୀ କହିଲା ଭଳି ତା ଜୀବନର କଥା ଗପିଯାଏ । ଭାଲୁଟା କଥା ଶୁଣିଲା ଭଳି ଚୁପ୍ ଚାପ୍ ପଡ଼ି ରହେ ।

ସେଦିନ ସନ୍ଧ୍ୟା ପୂର୍ବରୁ ମୁଁ ବେଳସୁ ଘରକୁ ଫେରିଲି । ଭାଲୁଟା ପିଣ୍ଡା ତଳେ ପଡ଼ି ଧକାଉଥାଏ । ବେଳେବେଳେ ଚିହାର କରୁଥାଏ । ପିଣ୍ଡା ଉପରେ ବସି ଲଛମନ ଓଠ କାମୁଡ଼ି ପାହାର ପରେ ପାହାର ବଜାଇ ଦେଉଥାଏ । ପାଟି କମ୍ପାଉଥାଏ- ''ବେଇମାନ, ନମକ୍‌ହାରାମ୍ ମୁଝେ ମାରେଗା ।'' ଭାଲୁଟା ତଳେ ଗଡ଼ି ଗଡ଼ି ଯାଉଥାଏ । ବେଳେବେଳେ ବାଡ଼ିଟାକୁ ହାତରେ ରୋକି ନେଉଥାଏ । ଲଛମନର ଏ ରାଗ କେବେ ମୁଁ ଦେଖି ନଥିଲି । ଆସି ଠିଆ ହୋଇଗଲି । ଲଛମନ କହିଲା - ''ବାବୁଜୀ-ଆଜ୍ ଲଢ଼ନେ ବକତ୍ ମେରା କୁହ୍ଲାମେ ବଦମାସ୍ ପଟକ୍ ଦିଆ । ଇତ୍‌ନା ଦିମାକ୍ ହୋ ଗୟା ହେ ।" ପୁଣି ଉଠିକି ଦି ଚାରି ପାହାର ଝାନସିଂର ମୁଣ୍ଡକୁ ଲଗାଇଲା । ଝାନସିଂ କେବଳ ତଳେ ପଡ଼ି କୁଁ କୁଁ ହେଉଥାଏ । ଲଛମନ୍ ପ୍ରତି ଘୃଣାରେ ମୋ ମନ ପୂରି ଉଠିଲା । ଭାବିଲି ଜଙ୍ଗଲର ଜାନୁଆର୍ ସହିତ ରହି ମଣିଷ ବି ଜାନୁଆର୍ ବନିଯାଏ । ମୁଁ କବାଟ ବନ୍ଦ କରି ଘରକୁ ଗଲି । ସନ୍ଧ୍ୟାବେଳେ ଇଚ୍ଛା କରି ବାହାରକୁ ବାହାରିଲି ନାହିଁ । ଲଛମନ୍ ସାଙ୍ଗରେ କଥାବାର୍ତ୍ତା କରିବାକୁ ମୋଟେ ମନ ହେଲାନି ।

ରାତି ପ୍ରାୟ ଅଧ ହେବ, ହଠାତ୍ ମୋ ନିଦ ଭାଙ୍ଗିଗଲା । ଦୁଆର ମୁହଁରେ ମୁଁ କାନ୍ଦଣା ଶୁଣିବାକୁ ପାଇଲି । କବାଟ ଖୋଲିଲି । ଅନ୍ଧାର ଭିତରୁ ଖାଲି ଲଛମନ୍‌ର କାନ୍ଦଣା ଶୁଭିଲା । ଆସ୍ତେ ଆସ୍ତେ ଲଣ୍ଠନ ଧରି ବାରଣ୍ଡାରେ ପହଞ୍ଚିଲି । ଲଛମନ୍ ଝାନସିଂକୁ କୁଣ୍ଢେଇ

ପିଲାଙ୍କ ଭଳି ଅସମ୍ଭାଳ ହୋଇ କାନ୍ଦୁଛି । ଆଖି ପତା ବୁଡ଼ାଇ ଲୁହର ବଢ଼ି ଗାଲ ଉପର ଦେଇ ଗଡ଼ି ଆସୁଛି । ମତେ ଦେଖି ଲଛମନ୍ ବେଶୀ କେଁ କେଁ ହୋଇ ପାଟି କରି ଉଠିଲା । କାନ୍ଦୁ କାନ୍ଦୁ କହିଲା- ''ବାବୁଜୀ କିତନା କସୁର ମେରା ହୋ ଗୟା । ଇତ୍‌ନା ମାର୍ ଦେନେସେ ଭି ମୁଝେ କୁଛ୍ ନହିଁ କିୟା । ଜଙ୍ଗଲ୍ ମେ ରହନେ ବକତ୍ ଓ ଘୁଷା ହୋନେସେ ଜାନ୍‌ଲେ ଲେତା ହେ । ଆଦିମ୍ କେ ପାସ୍ ରହକର ଜାନୁଆର୍ ଆଦିମ୍ ବନଗୟା । ମଗର ହମ ଆଦିମ୍ ହୋକର ଜାନୁଆର୍ ବନଗୟେଁ ?'' ଲଛମନ୍ ଆଉ କଥା କହି ପାରିଲା ନାହିଁ । ଝାନସିଂ ପିଠି ଉପରେ ମୁଣ୍ଡ ଲଦି ଖୁବ୍ ଜୋରରେ କାନ୍ଦି ଉଠିଲା । ଲଛମନ ଉଠି ପଡ଼ି କହିଲା- ''ବାବୁଜୀ ଔର ଇହାଁ ନହିଁ ଠହରେଙ୍ଗେ । ଦିଲ୍ ଆଚ୍ଛା ନହିଁ ଲଗତା ।'' ତାପରେ ତାର ପୁଟୁଳି  ପତ୍ର ସଜାଡ଼ି ନେଇ ଉଠିଲା । ଝାନସିଂକୁ କାନ୍ଦୁ କାନ୍ଦୁ କହିଲା- ''ବେଟା ମୁଝେ ମାଫ୍ ତୁ କ୍ୟା ନହିଁ କରେଗା ?'' ଜରୁର କରେଗା- ତୁ ମେରା ବେଟା ହେ ତୋ । ହାଁ, ବାବୁଜୀକୋ ପ୍ରନାମ କରୋ । ଝାନସିଂ ଆଗ ଗୋଡ଼ ଉଠାଇ ନମସ୍କାର କଲା । ତାପରେ ମତେ ଲଛମନ୍ ସଲାମ ବଜାଇ ବାରଣ୍ଡାରୁ ତଳକୁ ଓହ୍ଲାଇ ପଡ଼ିଲା । ଆଖି ମୋର ଅଶ୍ରୁରେ ଭରିଗଲା । ଜଙ୍ଗଲର ଜାନୁଆର୍ ମଣିଷର ଅନ୍ତର ପାଇଛି, ଆଉ ରାସ୍ତା କଙ୍ଗର ବାରବୁଲା ମଣିଷର ମନ ତଳେ ଦେବତାର ଅନୁଭବ ରହିଛି । ମୁଁ ଝାନସିଂ ଓ ଲଛମନକୁ ପ୍ରତି ନମସ୍କାର ଜଣାଇଲି ।

●●●

# ଘରଚଟିର ଛୋଟ କାହାଣୀଟିଏ

ଛୋଟ ଘରଚଟି ଚଢ଼େଇଗୁଡ଼ାକ ଉପରେ ପ୍ରତିଭାର ଦାରୁଣ ରାଗ । ସକାଳୁ ସଞ୍ଜଯାଏଁ ଗାଳି ବର୍ଷଣ କରୁଥିବ । ରାତିରେ ବି ନିଦରୁ ଉଠି ବେଳେବେଳେ ବିଳିବିଳେଇ ମହାଭାରତ ପୋଥି ଖୋଲେ । କ'ଣ ନା, ଘରଚଟିଟାଏ ତା ଉପରେ ଝାଡ଼ା ଫେରିଦେଲା । ରୋଷାଇ କରୁ କରୁ ପଡ଼ିଶା ଘର ଅଭୟବାବୁଙ୍କ ସ୍ତ୍ରୀ ସାଙ୍ଗରେ ଯୋରସୋରରେ ଆଲୋଚନା ଚାଲେ । ଆଜିକାଲି ଏତେ ମାରଣାସ୍ତ୍ର ବାହାରୁଛି । କ୍ଷେପଣାସ୍ତ୍ର ପଠା ଯାଉଛି । ଘରଚଟି ଗୁଡ଼ାକର ବଂଶଲୋପ ପାଇଁ କ'ଣ କିଛି ଗୋଟାଏ ବ୍ୟବସ୍ଥା କରି ହୁଅନ୍ତାନି ? ଚୀନ୍‌ରେ କାଳେ କେତେଦିନ ତଳେ ଘରଚଟି ହତ୍ୟା ସପ୍ତାହ ପାଳନ କରାଯାଇଥିଲା । ଆମ ସରକାର ସେହିପରି ଗୋଟାଏ ଯୋଜନା କଲେ ମଣିଷ ରକ୍ଷା ପାଇଯାନ୍ତା । ଘରଚଟି ବିରୁଦ୍ଧରେ ଭାଷଣ ଦେଉଁ ଦେଉଁ ସେ ଏତେ ହତଜ୍ଞାନ ହୋଇଉଠେ ଯେ କେତେଥର ମାଛ ଭାଜୁ ଭାଜୁ ଲେଉଟେଇବାକୁ ଭୁଲି ମାଛ ପୋଡ଼ି ଦେଇଛି । ମାଛର ଏପରି ଶୋଚନୀୟ ପରିସ୍ଥିତି ପାଇଁ ଖାଇ ବସିଲା ବେଳେ ପ୍ରଶ୍ନ କଲି ତ ଘରଚଟିର କୀର୍ତ୍ତି ବୟାନ୍‌ରେ ସେ ଏତେ ଅନାୟତ୍ତ ହୋଇ ପଡ଼ିବ ଯେ ଫଳରେ ଦ୍ୱିତୀୟଥର ପରଷିବା ବି ବନ୍ଦ ହୋଇଯିବ । ଏଣିକି ଘରେ କିଛି ଓଲମ ବିଲମ ହେଲେ ମୁଁ ଡରେ, ପଚାରେନି; କାଳେ ଏ ଅବ୍ୟାପାର ମୂଳରେ ଘରଚଟିର କାହାଣୀ ରହି ଯାଇଥିବ । କିଛି ନ କହିଲେ ବି ଘରଚଟି ବିରୁଦ୍ଧରେ ମତେ ପ୍ରତିଦିନ ଅବଶ୍ୟ କିଛି ଶୁଣିବାକୁ ପଡ଼ିବ, ଏଥିରେ ସନ୍ଦେହ ନାହିଁ ।

ଏହି ଘରଚଟି ଗୁଡ଼ିକ ସହିତ ମୋର ସମ୍ବନ୍ଧ ଆଜିକୁ ପ୍ରାୟ ଦୁଇବର୍ଷ ହୋଇଗଲା । ହଠାତ୍ ଦିନେ ଆମ ବସାଘର ବାରଣ୍ଡା ଚାଳରେ ମୁଁ ଛୋଟ ଘରଚଟିଟିଏ ଦେଖିଲି । ନୂଆ ଜୀବ । ମତେ ବଡ଼ କୌତୁକ ଲାଗିଲା । ମୁଁ ପ୍ରତିଭାକୁ ଟାଣି ଟାଣି ନେଇ ଚୁପ୍‌ଚାପ୍ ଦେଖାଇ ଦେଲି । ପାଟି କଲେ କାଳେ ଉଡ଼ିଯିବ । ତା'ପରେ ଏହି ନିରୀହ ମଣିଷ-ପ୍ରିୟ ଜାତି ଉପରେ ମୁଁ ଗୋଟିଏ କ୍ଷୁଦ୍ର ଭାଷଣ ଦେଇଥିଲି । ପ୍ରିତିଭା ବି, ସେତେବେଳେ କୌତୁହଳ ପ୍ରକାଶ କରିଥିଲା । ଆଜିକାଲି ବି ସେହି କଥାକୁ ଖୁଣ୍ଟା ଦେଇ ସେ ମୋ ଉପରେ ଅଧ୍ୟାୟେ ଦୁଇ ଅଧ୍ୟାୟ ଚଳାଇବାକୁ ବେଳେ ବେଳେ ଭୁଲି ଯାଏନି । ମୋର ଭାରି ଇଚ୍ଛା ହେଉଥିଲ, ଆମ ଓଳିରେ ବସା ବାନ୍ଧିଥାନ୍ତାକି । (ଆଗରୁ ମୁଁ ଶୁଣିଛି ଘର ଓଳିରେ ସେମାନେ ରହନ୍ତି ।) ଗୋଟେ ଦି'ଟା ଛୁଆ ଆଣି ରଖନ୍ତି । ପ୍ରତିଭା ମତେ ତାଗିଦ କରି କହିଥିଲା-"ଛି ସେଗୁଡ଼ାକ ବଡ଼ ନିଉଛୁଣା ଜୀବ । ତାଙ୍କୁ ଛୁଇଁଲେ ପାଳିଜର ହୁଏ ।" ମତେ ସେ ବିଷୟରେ ଆଉ ଚିନ୍ତା

କରିବାକୁ ପଡ଼ିଲାନି । ଏଇ ଦୁଇ କରି ଘରଚଟି ସଂଖ୍ୟା ଆମ ଘରେ ବଢ଼ିବାକୁ ଲାଗିଲା । ବର୍ତ୍ତମାନ ଆମ ଚାଳ ଯାକରେ ଘରଚଟି ବସା । ମେଞ୍ଚା ମେଞ୍ଚା ନଡ଼ାର ଅଗ ଟଣା ହୋଇ ଓହଳି ଆସିଛି । ତା ଭିତରେ ଛୋଟ ଛୋଟ ଖୋପ । ପ୍ରତି ଖୋପ ଭିତରେ ଯୋଡ଼ ଯୋଡ଼ ଟିକିଟିକି ଚଢ଼େଇ ।

ଚଢ଼େଇ ଗୁଡ଼ିକ ରହିବା ଫଳରେ ଆମକୁ ବି କିଛି ନା କିଛି ଅସୁବିଧା ଅବଶ୍ୟ ଭୋଗ କରିବାକୁ ପଡୁଥିଲା । ସେମାନେ ଇଚ୍ଛାକରି ଆମକୁ ହଇରାଣ କରୁ ନଥିଲେ, ଏକଥା ସ୍ୱୀକାର କରିବାକୁ ପ୍ରତିଭା ବିଲକୁଲ୍ ନାରାଜ । ଚାଳରୁ ସବୁବେଳେ ଘାସ, କୁଟା-କାଠି ଘରେ ଗଦା ହେଉଥିବ । ଘର ସଫା କରି ଅଳିଆ ଫୋପାଡ଼ି ମୁହଁ ଫେରାଇଲା ବେଳକୁ ପଛଆଡ଼େ ପୁଣି ଅଳିଆ ପଡ଼ି ସାରିବନି । ପ୍ରତିଭା ଛାଞ୍ଚୁଣି ତଳେ ବାଡ଼େଇ ରାଗରେ ପାଟି ନାଲ ପଡ଼ିଯାଏ । ଘର କବାଟ କଣରେ ଖଣ୍ଡେ ସରୁ ବାଉଁଶ ଆଉଜା ହୋଇ ଥୁଆ ହୋଇଛି । ତାପରେ ସେଥିରେ ଚଢ଼େଇ ବସା ଖେଞ୍ଚି ଖେଞ୍ଚି ସେଗୁଡ଼ିକୁ ବାହାର କରିବ, ଚଢ଼େଇ ଗୁଡ଼ିକ ଏପାଖରୁ ଉଡ଼ିଯାଇ ସେ ପାଖରେ ବସୁଥିବେ । କପାଳରୁ ଟପ ଟପ ହୋଇ ଝାଳ ଦେହରେ ଏଠି ସେଠି ଛାଟି ହୋଇ ପଡୁଥିବ । ବେଳେ ବେଳେ ଲୁଗା ଛନ୍ଦି ହୋଇ ଯିବାରୁ ପ୍ରତିଭା ତଳେ ପଡ଼ିଯାଏ । ଶେଷକୁ ସେ ନିରସ୍ତ ହୋଇ ବସି ଛୋଟ ପିଲାଙ୍କ ପରି କାନ୍ଦେ । ଏତିକି ବେଳକୁ ଚଢ଼େଇ ଗୁଡ଼ାକ ଫର କରି ଉଡ଼ି ତା' ମୁଣ୍ଡ ଉପରେ ଚାଲିଯାଆନ୍ତି । ମତେ ଭାରି ହସ ମାଡ଼େ । ଆଉ ମୋର ରକ୍ଷାରକ୍ଷଣ ନାହିଁ । ଚଢ଼େଇ ଉପରକୁ ସବୁ ଅଡ଼କଷ ପ୍ରତିଭା ମୋରି ଉପରେ ଛିଣ୍ଡାଇ ଦିଏ । ମୁଁ କେବଳ ଶେଷ ପର୍ଯ୍ୟନ୍ତ ହସେ ।

ପ୍ରତିଭାର ରାଗ ଶହେ ଦଶ ଡିଗ୍ରୀ ଉପରକୁ ଉଠେ ଯେତେବେଳେ ଚଢ଼େଇ ଗୁଡ଼ାକ ମୋ କୁନିପୁଅ ଶୋଇଥିଲାବେଳେ ତା ଉପରେ କୁଟା ପକାନ୍ତି । ସାନ ପୁଅଟା ମୋର ଭାରି ଅଝଟିଆ । ଖାଇଲାବେଳେ ବାର ନବରଙ୍ଗ କାଢ଼େ । ପ୍ରତିଭା ବୁଝେଇ ସୁଝେଇ ତାକୁ ଖୋଇଲାବେଳେ ଚଢ଼େଇ ଗୋଟାଏ ଡେଣା ଫଡ଼ ଫଡ଼ କରି ଉଡ଼ିଗଲେ କୁନିପୁଅ ଚମକିପଡ଼ି ଖାଇବା ବନ୍ଦ କରେ । ପ୍ରତିଭା କୁନି ପୁଅ ଛାତିକୁ ଛେପ ଛାଟି ପାଟି କରେ-"ନିଆଁ ଲଗା ଚଢ଼େଇ ଗୁଡ଼ାକ ଛୁଆଟାକୁ ମୋର ଓପାସରେ ମାରିଲେ । ଏଘରେ ଆଉ ରହି ହେବ ନି ।" ବର୍ଷା ବେଳେ ଚାଳକୁ ଏଠିସେଠି ପାଣି ପଡୁଥିବା ଜାଗା ମାନଙ୍କରେ ତଳ ଓଦା ନ ହେବା ପାଇଁ ଥାଳି ଗିନା ରଖୁ ରଖୁ ଚଢ଼େଇ ଗୁଡ଼ାଙ୍କର ଚଉଦପୁରୁଷ ଉପରେ ଅଭିଯାନ ଚଳାଏ ।

ଚଢ଼େଇ ଗୁଡ଼ାକ ଉପରେ ପ୍ରତିଭା ଯେତେ ଚିଡ଼ିଲେ ବି ମୁଁ ସେମାନଙ୍କ ଉପରେ କେବେ ରାଗି ପାରେ ନା । ଟିକି ଟିକି ଚଢ଼େଇ ଗୁଡ଼ିକ ସବୁବେଳେ ଚଞ୍ଚଳ । ଚିଟ୍ ଚିଟ୍ ଶବ୍ଦ କରି ଘରସାରା ଉଡ଼ି ବୁଲୁଥିବେ । କାହାର କାହାର ବେକରେ କଳା କଳା ପଟି । କାହାର ବେକ କେବଳ ଧଳା । ପାଲିସ୍ ମାଟିଆ ଛୋଟ ଛୋଟ ଉପର ଡେଣାରେ କଳାର ଟିପା ଚିତା କୁଟିଲା ପରି ଭାରି ମାନେ । ମଝିରେ ମଝିରେ ଧଳାର କୁନି କୁନି ବୁନ୍ଦା । ପେଟ ତଳଟା ପ୍ରାୟ ଖାଲି ଧଳା । ଯେମିତି ହାତୀଦାନ୍ତର ଫରୁଆ ଉପରେ ଚିତ୍ରକରା ଢାଙ୍କୁଣିଟିଏ ଖପା ହୋଇଛି । ଗୋଲ ଛୋଟ ଦେହଟି ଭିତରୁ ଟିକି ପୁଛଟିଏ ଲମ୍ବି ଯାଇଛି । ପୁଛ ଅଗରେ

କଳାର ସେଡିଂ । ଅଗଟା ଟିକିଏ ଚତରା । ବସିଲାକ୍ଷଣି ପୁଚ୍ଛଟି ନାଚୁଥିବ । ଏଣେ ପାଟିରୁ ଚିଟ୍‌ଚିଟ୍ ରାଗିଣୀ ଛୁଟିଥିବ । ବେଳେବେଳେ ଉଡ଼ିଯାଇ ବସା ଭିତରେ ଅଧା ପଶି କୁଟା ଗୁଡ଼ାକ ଥଣ୍ଟରେ ବିଦାରି ବିଦାରି କୁଟ କୁଟ ଶବ୍ଦ କରୁଥିବେ । ବସାକୁ ପ୍ରତିଦିନ ଭାଙ୍ଗି ଦେଲେ ବି ନୂଆ ବସା କରିବା ପାଇଁ ତାଙ୍କର ଅକ୍ଳାନ୍ତ ଚେଷ୍ଟା ଦେଖି ମୁଁ ଅଭିଭୂତ ହୋଇପଡ଼େ ।

ସକାଳ କଅଁଳ ଖରାରେ ବେଳେବେଳେ ମାଈ ଚଢ଼େଇଟିଏ କୁଦି କୁଦି ଆମ ବାଡ଼ିରେ ଥିବା ହୀରାଗୋଲ ଫୁଲକୁ ଥଣ୍ଟରେ ଚିରି ଚିରି ଖାଉଥିବ । ମଝିରେ ମଝିରେ ଛନ ଛନ ହୋଇ ବୋବାଏ । ଥଣ୍ଟ ଖୋଲିଲେ ବେକ ଫୁଲି ଉଠେ । ପର ଗୁଡ଼ାକ ନଈ ଫେଣପରି ଆଗକୁ ଉଛୁଳି ଆସେ । ପର ଭିତରେ ଥଣ୍ଟ ଭୁକାଇ ସେ ଥରେ ଦିଥର ଖେଳେଇ ନିଏ । ଫୁଲଗଛରୁ ତଳକୁ, ତଳୁ ଫୁଲ ଗଛକୁ ଡେଇଁ ଡେଇଁ ପୁଣି ଡାକେ । ଅଣ୍ଡିରା ଚଢ଼େଇଟି ବେକତଳ ଅଧା କଳା ଅଧା ଧଳା ପରଗୁଡ଼ିକୁ ଫୁଲେଇ ପୁଚ୍ଛଟିକୁ ନଚେଇ ନଚେଇ ତା ଆଗକୁ ଡେଇଁ ପଡ଼େ । ମାଈ ଚଢ଼େଇଟି ଉଡ଼ିଯାଇଁ ଛୋଟ ନିମଗଛ ଡାଳରେ ବସେ । ପଛଆଡ଼କୁ ଟିକିଏ ମୁହଁ ଫେରାଇ ଫେରାଇ ଡାଳରେ ଥଣ୍ଟ ମାରେ । ଅଣ୍ଡିରା ଚଢ଼େଇଟି ତା ପାଖକୁ ଉଡ଼ିଯାଏ । ତା ପୂର୍ବରୁ ମାଈ ଚଢ଼େଇଟି ଉପର ଡାଳକୁ ଉଠି ଯାଇଥାଏ । ତା ପରେ ଗଛ ଉପରେ ଦମେ ଗୋଡ଼ା ଗୋଡ଼ି ଚାଲେ । ଉଡ଼ିଉଡ଼ି ଘର ଭିତର କାଠପେଲାରେ ଏ ପାଖ ସେପାଖ ହୋଇ ଦୁହେଁ ଯାକ ଟିକିଏ ବସିଯାନ୍ତି । ଥଣ୍ଟ ମେଲାଇ ଜଣେ ଅଳସ ଭାଙ୍ଗିଲେ ଅନ୍ୟଟି ତା'ର ଥଣ୍ଟ ଖୋଲେ । ଜଣେ ଚାହିଁ ବୋବାଇଲେ ଅନ୍ୟ ଜଣକ ମୁହଁ ଫେରାଇ ନିଏ । ପାଖକୁ ଆସିଲେ ଟିକିଏ ଡେଣାକୁ ଜାକିଜୁକି ଘୁଞ୍ଚି ବସେ । ତା ପରେ ଦୁହେଁ ଚାହାଁଚାହିଁ ହୋଇ ବୋବାନ୍ତି । ଆଗପରି ଗୋଡ଼ାଗୋଡ଼ି ଚାଲେ, ମୁଁ ପ୍ରତିଭାକୁ ଟାଣିନେଇ ସେମାନଙ୍କର ପ୍ରେମ ଅଭିନୟ ଦେଖାଏ । ପ୍ରତିଭା ମୋ ଉପରେ ଭିଣି ଭିଣି ହୋଇଉଠେ । ତା'ର ବିରକ୍ତି ଭିତରୁ ଚାପା ହସ ବି ଉଙ୍କି ମାରୁଥାଏ । ମୋ ଆଖି ତା ଆଖିରେ ମିଳିଗଲେ ସେ ହସି ପକାଏ । ହଠାତ୍ ହସ ବନ୍ଦ କରି ସେ ରାଗିଯାଇ ବାଉଁଶ ଧରେ-ଏହିକ୍ଷଣି ଘରେ ପୁଣି ଆଣ୍ଠୁଏ ଅଳିଆ ଗଦା କରିବେ ।

ବେଳେବେଳେ ଯୋଡ଼ି ଯୋଡ଼ି ଚଢ଼େଇ ଘରର ହୁଗୁଳା ରୁଅ ବତା ଭିତରେ ଲୁଚିକରି ଚୁପ୍‌ଚାପ୍ ବସନ୍ତି । କେବଳ ପୁଚ୍ଛଟି ବାହାରକୁ ଦିଶୁଥାଏ । ହଠାତ୍ ପୁଣି ପାଟି କମ୍ପି ଉଠେ । କ୍ରମାଗତ ଅଭିସାରର ଅଭିନୟ ଚାଲେ । କେତେବେଳେ କେମିତି ସେମାନେ ଉଡ଼ିଆସି ଆମ କୁନି ଲାଗି ଟଙ୍ଗା ହୋଇଥିବା ଦୋଳି ଦଉଡ଼ିରେ ବସି ଝୁଲନ୍ତି, (କୁନି ଆମର ଆଜିକାଲି ଆଉ ଦୋଳିରେ ଶୁଏନି; କିନ୍ତୁ ଦୋଳିଟା ସେମିତି ଟଙ୍ଗା ହୋଇଛି । ଖୋଲା ହୋଇନି । ପ୍ରତିଭା ଖୋଲିବାକୁ କାହିଁକି କେଜାଣି ମନା କରେ) ପ୍ରତିଭାକୁ ଆସିବାର ଦେଖିଲେ ଉଡ଼ି ଉପରକୁ ପଳାନ୍ତି ।

ଦିନେ ଦିନେ ରାତିରେ ପ୍ରତିଭା ଘରଚଟି ଗୁଡ଼ାକୁ ବଡ଼ ହଇରାଣ କରେ । ରାତିରେ ବିଚରା ଗୁଡ଼ାକ ଶକ୍ତିହୀନ ହୋଇ ପଡ଼ନ୍ତି । ଦୃଷ୍ଟିଶକ୍ତି କମିଯାଏ । ବସା ଭିତରେ ନୀରବରେ ବିଶ୍ରାମ ନିଅନ୍ତି । ପ୍ରତିଭା ଟର୍ଚ୍ଚ ଜାଳି ବାଉଁଶରେ ତାଙ୍କୁ ଖେଞ୍ଚିବାକୁ ଆରମ୍ଭ କରେ । ସେଗୁଡ଼ିକ

ଏଠି ସେଠି ଉଡ଼ି ଉଡ଼ି ଯାଉଁଥାନ୍ତି । ଥରେ ମଶାରି ଉପରେ ଚଢ଼େଇଟିଏ ପଡ଼ିଗଲା ପ୍ରତିଭା ତାକୁ ଘଉଡ଼ାଇ ଘଉଡ଼ାଇ ତଳକୁ ଆଣିଲା । ତା'ପରେ ଲୁଗା ପକାଇ ମାଡ଼ି ବସିଲା । ଛୋଟ ଜାଲି ପଞ୍ଜୁରୀଟିରେ ପୂରାଇ ରଖିଲା । ସକାଳୁ ତା ମଜା ବାହାର କରିବ । ମୁଁ ସକାଳୁ ଉଠି ଦେଖିଲି ପଞ୍ଜୁରୀ ଉପରେ ଆଉ ଗୋଟିଏ ଚଢ଼େଇ ବସି ବୋବାଉଛି । ପଞ୍ଜୁରୀ ଭିତରେ ଉଠପଡ଼ ହୋଇ ଆବଦ୍ଧ ଚଢ଼େଇଟି ଚିହ୍ନାର କରୁଛି । ପାଖରେ ଆଉ ଦଳେ ଚଢ଼େଇ ସମସ୍ୱରରେ ବୋବାଳି ଛାଡ଼ିଛନ୍ତି । ମୁଁ ପ୍ରତିଭା ଉପରେ ମନେ ମନେ ଚିଡ଼ିଲି । ଗୁଣୁ ଗୁଣୁ ହୋଇ ବି ଟିକିଏ ଗାଳି ଦେଲି । ପ୍ରତିଭା ବେସର ବାଟୁ ବାଟୁ ଦାନ୍ତ କାମୁଡ଼ି ବନ୍ଦୀ ଚଢ଼େଇଟିକୁ କହୁଥାଏ- "ଟିକିଏ ରହ ତତେ ମୁଁ ସାବାଡ଼ କରୁଛି ।" ମୋ କୁନିପୁଅ ପଞ୍ଜୁରୀ ପାଖକୁ ହସି ହସି ଦଉଡ଼ି ଯାଉଥାଏ । ପାଖରେ ବସିଥିବା ଚଢ଼େଇ ଗୁଡ଼ାକ ଉଡ଼ି ପଳାନ୍ତି । ପୁଣି ମୋ ପାଖକୁ ତା ମାଆ ପାଖକୁ ଦଉଡ଼ି ଆସି ମୁହଁ ଲମ୍ବାଇ କହୁଥାଏ-'ଚଲେଇ ପଅଲେଇଲେ ।' ମୁଁ କୁନିକୁ ଧରି ପକାଇ କହିଲି- "କୁନା, ଚଢ଼େଇ କାନ୍ଦୁଛି । ତା' ମା'କୁ ଖୋଜୁଛି, ତୋ ମାଆକୁ କହ ତାକୁ ଛାଡ଼ିଦେବ ।" କୁନି ଯାଇଁ ମାଆ ପାଖରେ ଜିଦ୍ ଧରିଲା- "ଚଲେଇ ମାଆଁ ଖୋଜୁଚି । ତାକୁ ଛାଲି ଦେ ।" ମାଆ ତାକୁ ଯେତେ ବୁଝାଇଲେ ବି ତା'ର ଏକା ଜିଦ୍ । ପ୍ରତିଭା ଚୁଲି ମୁଣ୍ଡରୁ ଉଠିଆସି କୁନିକୁ ଆଣି ପଞ୍ଜୁରୀ ପାଖକୁ ଆସିଲା । କୁନି ପୁଣି କହିଲା- "ତା ମାଆ ଖୋଜୁଚି ।" ପ୍ରତିଭାର ମୁହଁରୁ ସବୁ ରାଗ ପୋଛି ହୋଇଗଲା । ସେ ପଞ୍ଜୁରୀ ମୁହଁ ଖୋଲି ଦେଲା । କୁନି ତାଳି ପିଟିପିଟି ହସିଲା । ପ୍ରତିଭା କୁନିର ମୁହଁକୁ ଛୋଟ ଛୋଟ ଚୁମାରେ ପୋତି ପକାଇଲା । ମୁଁ ବି ଅଜଣାରେ ହସି ପକାଇଲି ।

ବଡ଼ ଛୁଟିରେ ମୁଁ ଘରକୁ ଛୁଆପିଲା ନେଇ ଚାଲିଯାଏ । ଘର ପାଖରେ ଅନେକ ସମୟରେ ଘରଚଟି କଥା ମନେପଡ଼େ । ପ୍ରତିଭାକୁ ଚିଡ଼େଇବା ପାଇଁ କହେ- "ଏଠି ମତେ ଭଲ ଲାଗୁନି । ଘରଚଟି ଦିଟା ଭଲା ଥାଆନ୍ତେ ।" ମୁଁ ଗେହ୍ଲାରେ ସହଜରେ କଥାଟା ଆରମ୍ଭ କରେ । କିନ୍ତୁ ପ୍ରତିଭାକୁ ଆଘାତ କରିବାକୁ ଯାଇଁ ନିଜକୁ ବେଶୀ ଆଘାତ ଦିଏଁ । ମୋ ଆଖି ଆଗରେ ଭାସିଉଠେ- ଛୋଟ ଚଢ଼େଇଗୁଡ଼ିକ ଡେଇଁ ଡେଇଁ ଗୋଲ ଗୋଲ ନାଲି ନାଲି ହୀରାଗୋଲ ଫୁଲରେ ଥଣ୍ଟ ଚୁକଉଛନ୍ତି । ମନଟା ମୋର କାଲୁବାଲୁ ହୋଇଉଠେ । ଚଢ଼େଇ ଗୁଡ଼ାକ ହଇରାଣ ହେଉଥିବେ । ଅନେକ ସମୟରେ ପ୍ରତିଭାକୁ ଲୁଚେଇ ମୁଁ ବାହାରକୁ ଚାଉଳ କିଛି କିଛି ଛାଟି ଦେଉଥିଲି । ଚଢ଼େଇ ଗୁଡ଼ାକ କୁଢ଼େଇ ହୋଇ ପଡ଼ି ଗେହ୍ଲାରେ ତଡ଼ାତଡ଼ି ହୋଇ ଚାଉଳସବୁ ତଳୁ ଖୁଣ୍ଟି ନେଉଥିଲେ । ସେମାନେ ଠେଲାଠେଲି ଲାଗନ୍ତି । ସେ ଠେଲା ଠେଲି କେବଳ ଖେଳର ଠେଲା ଠେଲି । ଯାହାର ପରିଣତି ଅଭିସାରରେ ଶେଷ ହୁଏ । କେବେ ରାଗରେ କଳି କରିବାର ମୁଁ ସେମାନଙ୍କୁ ଦେଖିନି । ଏହି ନିରୀହ ସଦା-ଶାନ୍ତିପ୍ରିୟ କ୍ଷୁଦ୍ର ଜୀବଗୁଡ଼ିକ ଲାଗି ମନ ମୋର ଉଦାସ ହୋଇଉଠେ । ପ୍ରତିଥର ଛୁଟିରୁ ଫେରି ମୁଁ ଦେଖେ ଚଢ଼େଇ ଗୁଡ଼ିକ ଘରେ ନଥାନ୍ତି । ମନ ମୋର କାଲୁବାଲୁ ହୁଏ । ସେମାନଙ୍କ ଅଭାବରେ ମୁଁ ବ୍ୟଗ୍ର ହୋଇପଡ଼େ । କ'ଣ ସତେ ପଳାଇଲେ ? ପ୍ରତିଭା ଶାନ୍ତିରେ ନିଶ୍ୱାସ ମାରେ- ଯାହା ହେଉ ଦଶାଦିଆ ଯାଇଛନ୍ତି, ମଣିଷ ଟିକିଏ ଶାନ୍ତିରେ ରହିବ । ଦିନେ ଦୁଇଦିନ ଭିତରେ

ପୁଣି ଆସି ସେମାନେ ଯୁଟନ୍ତି । ପ୍ରତିଭାର ରାଗ ଆହୁରି ବଢ଼ିଯାଏ ।

ଘର ଛପର ହେବା ପରେ ପରେ କିଛିଦିନ ପାଇଁ ସେମାନେ ଚାଲିଯାନ୍ତି । ପ୍ରତିଭା ପ୍ରତିଜ୍ଞା କରେ ଏଥର ଆସିଲେ ସେମାନଙ୍କୁ ବସା ବାନ୍ଧିବାକୁ କଦାପି ସୁଯୋଗ ଦେବନି । ମୁଁ ଟିକିଏ ଶଙ୍କିଯାଏ- କ'ଣ ସତେ ଆସିବେନି ? ପ୍ରତିଭାର ପ୍ରତିଜ୍ଞା କେବଳ ପ୍ରତିଜ୍ଞାରେ ରହେ । ପୁଣି ସେମାନେ ଆସନ୍ତି । ହୁଏତ ବେଶୀ ସଂଖ୍ୟାରେ ଆସନ୍ତି । ବସା ବାନ୍ଧନ୍ତି । ପୁଣି ତାଙ୍କର ଖେଳ, ଗୋଳମାଳରେ ଘର ପୂରିଉଠେ ।

ଧାନ ବୁଣାବେଳେ ସେମାନେ ପ୍ରାୟ କମ୍ ଘରକୁ ଆସନ୍ତି । ମୋତେ ମାଡ଼ି ମାଡ଼ି ପଡ଼େ । ମୁଁ ଘରଚଟି କଥା ପକାଇବାକୁ ଇଚ୍ଛାକରେ ନି, କିନ୍ତୁ ନ ପକାଇ ରହି ପାରେନା । ପ୍ରତିଭା ହସି ହସି କହେ- "ତୁମକୁ କ'ଣ ଆଉ ଭାତ ରୁଚିବ କି ? ଘର ପରା ଅଳିଆ ହେଉନି । ଯାଉନ ଘରଚଟି ସାଙ୍ଗରେ ବିଲରେ ପଲା ମାରି ରହିବ ।" ଧାନ ବୁଣା ସମୟ । ବିଲରେ ସେମାନେ ପଡ଼ି ରହନ୍ତି । ସେମାନେ କାଳେ କହନ୍ତି- "ଚଷା ଭୁଷା କେଡ଼େ ହୁରୁଷା, ଧାନ ଗୁଡ଼ାକ ବିଲରେ ପକାଇ ଦେଲା । ଚାଲ ଘରୁ ପଳେଇବା ।" ପ୍ରତିଭା ରୀତିମତ ଥଟ୍ଟା କରି କଥାଟା କହେ । ମୁଁ ଭାବୁଥାଏ ମଝିରେ ମଝିରେ ଅସରେ ଅସରେ ବର୍ଷା ହେଉଛି, ବିଚାରାଗୁଡ଼ାକ କେଉଁଠି ମୁଣ୍ଡ ଗୁଞ୍ଜିବେ, ଘରେ ରହିବା ଜୀବ, କଅଁଳ ପର ଉପରେ ବର୍ଷାର ଟାଣୁଆ ମାଡ଼- କେଡ଼େ କଷ୍ଟ ଦେଉଥିବ ! ସେଦିନ ପ୍ରତିଭାର ଘରଚଟି ଅତ୍ୟାଚାରରେ ଧୈର୍ଯ୍ୟଚ୍ୟୁତ ଘଟିଛି । ଘରେ ପହଞ୍ଚି ଦେଖିଲା ସେ କୌଣସି କଥା ଶୁଣିବାକୁ ଟିକିଏ ବି ପ୍ରସ୍ତୁତ ନୁହେଁ । ଆଜି ଘରଚଟିଙ୍କୁ ବିଦା କରିବ ନ ହେଲେ ନିଜେ ଘରୁ ବିଦା ହେବ । ଘରେ ସବୁ କାମ ପଡ଼ି ରହିଛି । ରାଗରେ ଆଖି ତା'ର ଛଳ ଛଳ ହୋଇ ଉଠୁଛି । ବାରମ୍ବାର ଚଢ଼େଇ ଗୁଡ଼ାକଙ୍କ ଠାରୁ ପରାଭାବ ସ୍ୱୀକାର କରି ତା'ର ନାରୀସୁଲଭ ଅନୁଭବ ବଡ଼ ତୀବ୍ର ଏବଂ ବେଦନାଦାୟକ ହୋଇ ପଡ଼ିଛି । ଦରକାର ପଡ଼ିଲେ ଏଗୁଡ଼ିକୁ ତଡ଼ିବା ପାଇଁ ଘରେ ନିଆଁ ଲଗାଇ ଦେବାକୁ ସେ କୁଣ୍ଠାବୋଧ କରିବନି । ବହୁ କଷ୍ଟରେ କାରଣ ଆବିଷ୍କାର କଲି ଯେ ସେ କୁନିର ପିଠାପାଇଁ ପିଠୋଉ ଗୋଳାଇ ରଖିଥିଲା । ତା ଉପରେ ଘରଚଟି ଝାଡ଼ା ଫେରିଦେଲା । ସେ ଏକେତ ଖପରାଢ଼ିଆଁ ଲୋକ । ରାଗରେ ଡେଇଁକରି ଉଚ୍ଛନ୍ନ । ପିଠୋଉଟା ଘୋଡ଼ାଇ ରଖିବା ଉଚିତ ଥିଲା । ମୁଁ ତାକୁ କହି ପାରିଲିନି । ତା'ର ବିଶ୍ୱମୂର୍ତ୍ତି ଦେଖି ମୁଁ ଟିକିଏ ଶଙ୍କିଗଲି । ସେ ଏତେ ବିବ୍ରତ ହୋଇ ପଡ଼ିଥିଲା ଯେ ତାକୁ କିଛି ତା ବିରୁଦ୍ଧରେ କହିଲେ, ସେ ସହିବା ପରିସ୍ଥିତିରେ ନ ଥିଲା । ତା' ପରେ ତା'ର ଅଭିଯାନ ଆରମ୍ଭ ହୋଇଗଲା । ବସା ଗୁଡ଼ାକ ଖୋଜି ଖୋଜି ନିର୍ମମ ଭାବରେ ବାଉଁଶରେ ଖେଞ୍ଚିବାକୁ ଲାଗିଲା । ଉଡ଼ି ଯାଉଁ ଯାଉଁ ଯିଏ ଅକଳରେ ପଡ଼ିଗଲା ତାକୁ ଦାରୁଣ ଭାବରେ ବାଡ଼େଇବାକୁ ସେ ପ୍ରଚେଷ୍ଟା କରିଥିଲା । ହଠାତ୍ ଘର ଭିତରକୁ ଚଢ଼େଇଟିଏ ଘାସ ଖଣ୍ଡେ ଧରି ବାହାରୁ ଉଡ଼ି ଆସିଲା । ଘର ଭିତରେ ଯେ ଏପରି ପ୍ରଳୟ ସୃଷ୍ଟି ହୋଇଛି ତାକୁ ମାଲୁମ ନଥିଲା । ସେତେବେଳକୁ ସବୁ ଚଢ଼େଇ ଉଡ଼ି ଯାଇଥିଲେ । ପ୍ରତିଭା ଏହି ଆଗନ୍ତୁକଟି ଉପରେ ସବୁ ରାଗର ପ୍ରତିଶୋଧ ନେବା ପ୍ରତୀକ୍ଷାରେ ଚୁପ୍‌ଚାପ୍ ଛକି ରହିଲା । ବସା ଭିତରକୁ ପଶିଲେ ଅଭିଯାନ ଆରମ୍ଭ କରିଦେବ ।

ସାଧାରଣତଃ ଘାସ ଧରି ଆସିଲେ ଚଢ଼େଇ ଗୁଡ଼ାକ ବସା ଭିତରେ ପଶି ବେଶୀ ସମୟ ରହନ୍ତି ସେ ଲକ୍ଷ୍ୟ କରିଛି । କି ଉପାୟରେ ତା'ର ଆୟତ୍ତରେ ସେ ପଡ଼ିବ, ପ୍ରତିଭା ନୀରବରେ ମୁଣ୍ଡ ଖେଳାଉ ଥିଲା । ପ୍ରଳୟ ପୂର୍ବରୁ ଗଭୀର ନିସ୍ତବ୍ଧତା ଆସିଲା ପରି ସେ ଖଣ୍ଡେ ଟୁଲ୍ ଉପରେ ବସି ପଡ଼ି ଓଠରେ ଦାନ୍ତ କାମୁଡ଼ି କଣକଣ ସବୁ ଭାବୁଥିଲା । ଚଢ଼େଇଟି ଆସୁ ଆସୁ କୁନି ଦୋଳିର ଜାଲ ଭିତରେ ତା ଗୋଡ଼ଟି ଭୁଲରେ ପଶିଗଲା । ହଠାତ୍ ସେ ଅଟକି ଗଲା । ଥଣ୍ଟରୁ ତା'ର ଛୋଟଫୁଲ ଲଗା ଘାସ ବକଟକ ଖସି ପଡ଼ିଲା । ପ୍ରତିଭା ଉଦ୍ଧତ ଶିକାରୀ ପରି ଶିକାରକୁ କବଳରେ ଦେଖି ତଳକୁ ଝାମ୍ପ ଦେଲା । ଆଖି ଗୁଡ଼ାକ ତା'ର ରାଗ ଓ ଆନନ୍ଦର ଆଧିକ୍ୟରେ ବ୍ୟାଧିଗ୍ରସ୍ତ ହୋଇ ନିଆଁ ପରି ପାଚି ପାଚି ଯାଇଥିଲା । ସେହି ଆଖିର ନରମ ଚାହାଣିରେ ମୁଁ କେତେଥର ନିଜତ୍ୱ ହରାଇ ଦେଇଛି । ଆଜିର ସେ ଗରମ ଆଖି ଦେଖି ମୋର ପୁରୁଷତ୍ୱ ମଧ୍ୟ ଶଙ୍କି ଉଠିଲା । ତା' ପରେ ଶତସିଂହ ବିକ୍ରମରେ ପିଠା ଖଡ଼ିକା ଧରି ସେ ପାହୁଣ୍ଡ ବଢ଼ାଇଲା । ଚଢ଼େଇଟି ଖସିଯିବା ପାଇଁ ଅକ୍ଲାନ୍ତ ସଂଘର୍ଷ କରୁଥିଲା । ତା'ର ସଂଘର୍ଷ ହିଁ ତା'ର କାଳ ହେଲା । ଦୋଳିଟି ବୁଲିଯିବା ଫଳରେ ସେ ସମ୍ପୂର୍ଣ୍ଣ ରୂପେ ସେଠାରେ ଆବଦ୍ଧ ହୋଇପଡ଼ିଲା । ବ୍ୟାକୁଳ ଚିତ୍କାରରେ ଡେଣା ଓ ଚଞ୍ଚୁ ସାହାଯ୍ୟରେ ସେ ମୁକ୍ତି ପାଇଁ ଆପ୍ରାଣ ଚେଷ୍ଟା କରୁଥିଲା । ପ୍ରତିଭା ପ୍ରତିଶୋଧର ଉତ୍କଟ ଆନନ୍ଦରେ ପ୍ରତିଶୋଧ ପାଇଁ ଆଗେଇ ଯାଉଥିଲା । ପର ମୁହୂର୍ତ୍ତରେ ଚଢ଼େଇଟିକୁ ସେ ନିର୍ମମ ଭାବରେ ହତ୍ୟା କରିବ । ମୋ ଆଖିରୁ ଜୁଳୁଜୁଳିଆ ପୋକ ଖସି ପଡ଼ିଲା । ହଠାତ୍ ଦୌଡ଼ି ଯାଇଁ ମୁଁ ପ୍ରତିଭା ହାତକୁ ଧରି ପକାଇଲି- "ଏ କ'ଣ କରୁଚ- ବିଚାରୀକୁ ମାରନା- ସେ ମାଆ ହେବାକୁ ଯାଉଛି- ଦେଖୁନ ଘାସ ଖଣ୍ଡିଏ ଧରି କେଡ଼େ ଆଗ୍ରହରେ ବସା ବାନ୍ଧିବାକୁ ଆସୁଥିଲା- ଅଣ୍ଡା ଦେବା ପୂର୍ବରୁ ଚଢ଼େଇମାନେ ଛୁଆର ସୁବିଧା ପାଇଁ କାଠିକୁଟା ଆଣି ବସା ସଜାଡ଼ନ୍ତି, ତୁମେ ପରା ମାଆ- ଛି, ତୁମ କୁନା କଥା ଭାବୁନା ।" କହୁଁ କହୁଁ ମୁଁ ଛେପ ଢୋକୁଥାଏ । ମୁହଁ ମୋର ଦଇନିର କାରୁଣ୍ୟରେ କାନ୍ଦି ଉଠୁଥିଲା ।

ପ୍ରତିଭା ମୋତେ ଖାଲି ବକ୍ ବକ୍ କରି ଅନାଇଲା । ତା ହାତରୁ ପିଠା ଖଡ଼ିକା ଖସି ପଡ଼ିଲା । ଆଗରେ ତା'ର କୁନା ଚଢ଼େଇଟିର ଚିତ୍କାର ଶୁଣି "ତା ମାଆକୁ ଖୋଜୁଚି" ବୋଲି ପାଟି କରି କାନ୍ଦି ଉଠୁଥାଏ । ସେ ଦିନ ମୋ କଥା ତା ମନରେ ଅଛି । ପ୍ରତିଭା ଦଉଡ଼ିଯାଇ କୁନାକୁ କାଖେଇ ଛାତିରେ ଚାପି ଧରିଲା । ମୁଁ ଚଢ଼େଇଟିକୁ ଖୋଲିଦେଲି । ସେ ଭୟରେ ଏତେ ଆତୁର ହୋଇଥିଲା ଯେ କୃତଜ୍ଞତା ଜଣାଇବା ପାଇଁ ମତେ ସୁଦ୍ଧା ଟିକିଏ ନ ଚାହିଁ ପ୍ରାଣ ବିକଳରେ ଉଡ଼ି ପଳାଇଲା । କୁନା କାଖରୁ ଓହ୍ଲାଇ ପଡ଼ି ହସି ହସି ତା ପଛେ ପଛେ ଦୌଡ଼ିଗଲା । ପ୍ରତିଭା ଉପରେ ମୁଁ ଆଖି ପକାଇଲି, ମୋର ଉଦ୍ଦେଶ୍ୟପୂର୍ଣ୍ଣ ଚାହାଣୀର କୋପରେ ମୁହଁରେ ତା'ର ଲାଲ ଚରିଗଲା । ସେ ତଳକୁ ମୁହଁ ମାଡ଼ିଲା । ସେ ମଉଳା ମୁହଁ ଭିତରେ ହସର ଛାଇ ମୋ ଆଖିରେ ସ୍ପଷ୍ଟ ହୋଇ ଉଠିଲା ।

ପ୍ରତିଭା ପୁଣି ନିକଟରେ ମାଆ ହେବାକୁ ଯାଉଛି ।

●●●

# ରାମଦାସ

ଇଟାଚୁଲୀର ବଡ଼ ବଡ଼ ଫାଙ୍କ ଦେଇ ଗୋଛା ଗୋଛା ଧୂଆଁ ଚା ହାଣ୍ଡିତଳୁ ବରଗଛର ଗହଳ ପତ୍ର ଫଟାଇ ଉପରକୁ ଉଠୁଛି । ବଜରନାଥ ଫୁଙ୍କା ଲଗାଇଛି । ଗଛର ସେପାଖ କଡ଼କୁ ଛିଡ଼ା ଖଜୁରୀ ପଟିଆ ଉପରୁ ଗଡ଼ିଯାଇଁ ସମରନାଥର ଛୁଆ ଦିଟା କୁଣ୍ଢାକୁଣ୍ଢି ହୋଇ ଘାସରେ ପଡ଼ି ଯାଇଛନ୍ତି । ନିଦ ବେଳେ ପାଟିରୁ ଗରଳ ଗଡ଼ି ଆସି ଶୁଖି ଶୁଖି ଗାଲ ଉପରେ ଗାର ପକାଇଛି । ଟିକିଏ ଦୂରକୁ ସାଆଡ଼ା ଗଛମୂଳ ହୁଙ୍କା ଉପରେ ରଙ୍ଗନାଥର ଔରତ୍ ଛୁଆର ମୂତ କନା ଦିଖଣ୍ଡ ଶୁଖାଇ ଦେଇ ଅଳସ ଭାଙ୍ଗି, ହାଇ ମାରି, ଆଙ୍ଗୁଳି ଫୁଟାଇଲା । ରଙ୍ଗନାଥର ଗଧ ଉପରକୁ ବଜରନାଥର ମାଙ୍କଡ଼ଟା କୁଦାଟେ ମାରିଦେଇ କାନଟାକୁ ତାର କାମୁଡ଼ି ଦେଲା । ଗଧଟା ଗର୍ଜି ଉଠିଲା । ଚା ହାଣ୍ଡିତଳୁ ମୁହଁ କାଢ଼ି ବଜରନାଥ ପାଟିଟେ କଲା- "ରାମଦାସ, କୁଛ୍ ଖୁରାକ୍‌କୀ ଜରୁରତ୍ ହେ ।" ମାଙ୍କଡ଼ଟା ଗଧ ଉପରୁ ଆସ୍ତେ କରି ଓହ୍ଲାଇ ପଡ଼ି ବଜରନାଥକୁ ଚାହିଁ ଚାହିଁ ଡରି ଡରି ଆଗକୁ ଚାଲିଲା । ବଜରନାଥ ମୁହଁ ବୁଲାଇଛି ତ ଧାଏଁ କିନା ଫେରିଆସି ଗଧ ଗାଲରେ ଗୋଟାଏ ଶକ୍ତ ଚାପୁଡ଼ କଷିଦେଇ ଏକାଡିଆଁକେ ଯାଇଁ ଗଛ ଉପରେ ହାଜର । ଡାଳ ଦେହରୁ ଗୁଣ୍ଡୁଚି ମୂଷାଟେ ତଳକୁ ଖସି ଆସିଲା । ରାମଦାସ ନିଜକୁ ଗଛ ଗଣ୍ଡି ଦେହରେ ଖସେଇ ଦେଇ ତା ପିଛା ଧଇଲା । ତଳେ ସିଅ ଉପରେ ଆସି କାଚି ହେଇ ପଡ଼ିଲା । ଛୋଟ ଛୋଟ ବର ଓହଳ ଦିଟା ଧରି ତାପରେ ସେ ଦୋଳି ଖେଳିଲା । ଚମ୍ପାକଲୀ ବଜରନାଥର ଛୋଟ ଭଙ୍ଗା ପେଟରା ଖଣ୍ଡକ ଉପରେ ବସି ପେଟରୁ ଉକୁଣି ବାଛି ପାଟିରେ ପକାଉଥିଲା । ରାମଦାସକୁ ଦେଖିଛି ତ, ତଳେ ଗଡ଼ି ଗଡ଼ି ଓହଳ ତଳୁ ତା ଲାଙ୍ଗୁଡ଼ ଧରି ସେ ବି ଝୁଲି ଝୁଲି ଡାଳ ଉପରକୁ କୁଦାଟେ ମାରିଲା । ଉପର ଡାଳର ମହୁବସାଟା ହଲିଗଲା । ଦିଟା ମାଛି ଆସି ଚମ୍ପାକଲୀର ନାକରେ ପଶିଗଲେ । ସେ ଖେଁ ଖେଁ ହେଇ ତଳକୁ ପ୍ରାଣବିକଳରେ ପଳାଇ ଆସିଲା । ବଜରନାଥ ଡାକ ଛାଡ଼ିଲା- "ଆରେ ରାମଦାସ, ଚା ତ ପି ଯାଓ ।"

ସୁନା ପିଲା ପରି ରାମଦାସ, ଚମ୍ପାକଲୀ ଆସି ବଜରନାଥର ଚା କଂସା ପାଖରେ ବସିଲେ । ଲାଲ ଚା ଉପରେ ମୁଢ଼ି ଭାସୁଛି । ବଜରନାଥ ଅଧା ପିଇ ନେଇ ମୁଢ଼ି ଛାଣି ପାଟିରେ ପକାଇଲା । ଦୁହିଁଙ୍କ ମୁହଁରେ ଟିକିଏ ଟିକିଏ ଦେଇ ଉଠିଗଲା । ତାପରେ ଚାଲିଲା

ଛଡ଼ାଛଡ଼ି । ରାମଦାସ ମାଡ଼ିବସି ଖାଇ ଯାଉଥାଏ । ଚମ୍ପାକଲୀ କିଛି ନ ପାଇ ଲାଙ୍ଗୁଡ଼କୁ ତାର କାମୁଡ଼ି ଦେଲା । ରାମଦାସ ବୁଲିପଡ଼ି ଗୋଡ଼ାଇଲା । ଚମ୍ପାକଲୀ ପଡ଼ି ଉଠି ପଡ଼ିଆଟା ଉପରେ ଦାଣ୍ଡିଆ ମାରୁଥାଏ । ଦୂରରେ ବସି ଦାନ୍ତ ନେଫିଡ଼ି ଖତେଇ ହେଉଥାଏ । ରାମଦାସ 'ହୁଁ' କରି କୁଦା ମାରି ଦାନ୍ତ କଡ଼ କଡ଼ କରି ଧାଉଁଥାଏ । ବଜରନାଥ ଖଣ୍ଡିଆ ବିଡ଼ି ଖଣ୍ଡେ କାନମୂଳରୁ କାଢ଼ି ଚୁଲିରୁ ନିଆଁ ଆଣି ଲଗାଉ ଲଗାଉ ହସି ପକାଇଲା । ପାକଲା ନିଶ ତାର ଉପରକୁ ଉଠିଗଲା । ଏଇ ମାଙ୍କଡ଼ ଦିଟା ତା ଜୀବନର ସବୁ । ଏଇ ଦିଟାକୁ ସେ ତା ଜୀବନର ଯାହା କିଛି ରାଗ ପ୍ରେମ, ସ୍ନେହ, ଶ୍ରଦ୍ଧା ସବୁ ଦେଇ ଆସିଛି । ବଜରନାଥ ବିଡ଼ି ଧୂଆଁ ଛାଡୁଛାଡୁ ଦାନ୍ତ ଦେଖାଇ ଆଖି ଖୋଷି ଦେଖୁଥାଏ । ରାମଦାସ ଚମ୍ପାକଲୀ ଗଡ଼ାପଡ଼ା ହେଇ ପଡ଼ିଆର ଏ ମୁଣ୍ଡରୁ ସେ ମୁଣ୍ଡ ଯାଏଁ ଦଉଡ଼ା ଲଗାଇଥାନ୍ତି ।

ରାମଦାସ ନାଚେ । ଏତେଦିନ ଭିତରେ ଚାରିଆଡ଼େ ତା ନାଁ ହେଇଗଲାଣି । ମାଙ୍କଡ଼ ମଣିଷ ଭଳି ତାଳ ସାଙ୍ଗରେ ଗୋଡ଼ ପକାଇ ଏତେ ସୁନ୍ଦର ନାଚିପାରେ ? ଯେଉଁଠି ନାଚ ହେଲା ତ ଲୋକ ଭିଡ଼ । 'ରାମଦାସ୍ ଆଓ ତ ବେଟା'-ବଜରନାଥ ଡାକିଦେଲା ତ ରାମଦାସ ଚମ୍ପାକଲୀକୁ ଗୋଇଠାଏ ମାରି ମଝିକୁ କୁଦିପଡ଼େ । ଶହ ଶହ ଆଖି ରାମଦାସ ଆଡ଼କୁ ଆଗେଇ ଯାଏ । କଳା କନାର ଛୋଟ ଫତେଇ ଖଣ୍ଡକ ଉପରେ ତିନି ଚାରିଟା ମେଡ଼େଲ କଳଙ୍କୀ ଲଗା ସେପ୍‌ଟିପିନ୍ ଦେଇ ଲଟକା ହୋଇଥାଏ । ରାମଦାସ ହାତ ଲମ୍ବାଇ ଦିଏ । ବଜରନାଥ ତାକୁ ପିନ୍ଧାଇ ଦେଇ ମେଡ଼େଲ ଗୁଡ଼ାକୁ ଟିକିଏ ସଜାଡ଼ି ସୁକୁଡ଼ି ଦିଏ । ତାପରେ ରାମଦାସ ଚାରିଆଡ଼କୁ ବୁଲି ଗୋଟାଏ ଗାଟାଏ ସଲାମ୍ ପକାଏ । ନାଚ ପରେ ନାଚ ଚାଲେ । ମୁଣ୍ଡରେ ମଳି କୁଟ କୁଟ ଛିଡ଼ା କନ୍ଥାରେ ତିଆରି ଛୋଟ ଟୋପିଖଣ୍ଡକ ମାଡ଼ି ଦେଇ ନାକ ତଳେ ମିଛରେ ନିଶ ମୋଡ଼ି ବେକରେ ଭଙ୍ଗା ଛତା ବେଣ୍ଟ ଖଣ୍ଡକ ପକାଇ ରାମଦାସ ଚୌକିଦାର ସାଜେ । ବଜରନାଥ ଢୋଲକ ଖଣ୍ଡକ ବାଡ଼େଇ ବାଡ଼େଇ ରାଗିଣୀ ଧରେ- "ଅବ୍ ଚୌକିଦାର୍ ହୋଗା ମେରା ରାଜା, -ଚୋର୍ ପକ୍‌ଡେଗା ମେରା ରାଜା,.-ଆଯା-. ଆଯା ବଚ୍ଚେ ଆଯା-ବୁଢ଼େ ଆଯା -ଯଓ୍ୱାନ୍ ଆଯା-ସବ୍‌କୋଇ ଆଯା ।" ରାମଦାସ ସାଜ ନଭାଙ୍ଗି, ବାହାରେ ଚାପଡ଼ ମାରି, ଚୋର ଗୋଡ଼ାଏ । ଗଞ୍ଜାଇ ଖାଇ ଚୌକିଦାର ଭଳି ଢୋଳାଏ । ହଠାତ୍ କିଏ ଆସିଗଲା ବୋଲି ଉଠିପଡ଼ି ଦୌଡ଼େ । ବଜରନାଥ ପାଟିରୁ ଅନବରତ କଥା ଛୁଟିଥାଏ । ସେ ଲହରେଇ ଲହରେଇ ମଝିରେ ମଝିରେ ଗୀତ ଝାଡ଼ି ଢୋଲକି ବାଡ଼େଇ କହି ଯାଉଥାଏ । ରାମଦାସ ତା କହିଲା ମୁତାବକ ଅଭିନୟ କରେ । ଦୁଇ ପାଖରେ ଝୁମୁକାଲଗା ବାଡ଼ି କାନ୍ଧରେ ପକାଇ ରାମଦାସ ଦହି ବିକେ । ଢୋଲକି ଉପରେ ବସି, ଗୋଡ଼ ଉପରେ ଗୋଡ଼ ପକାଇ, କାନରୁ ଖଣ୍ଡିଆ ବିଡ଼ି କାଢ଼ି ପାଟିରେ ଦେଇ ସେ ହାକିମ ହୁଏ । ଅଗଭଙ୍ଗା ପେନ୍‌ସିଲରେ ଖଣ୍ଡେ ଛିଡ଼ା ଖାତାରେ ଗାରେଇଲା ବେଳେ ଯୋଡ଼ିଲା ଓଠ ତାର ଟିକିଏ ଲମ୍ବି ଆସେ । ମୁଣ୍ଡରେ ମୟୂରପକ୍ଷୀ ଖୋସି, ବେକରେ କନା ଧଡ଼ିରେ ଗୁନ୍ଥା ପ୍ରୋହଳାମାଳ ପକାଇ, ଖଣ୍ଡିଆ ବେତ ଖଣ୍ଡେ ମୁହଁରେ ଲଗାଇ ସେ କୃଷ୍ଣ ସାଜେ । ଗୋଡ଼କୁ

ଗୋଡ଼ ଛନ୍ଦିଲା ବେଳେ ମାଛିଟେ ଆଗରେ ଉଡ଼ିଗଲା ତ ବଇଁଶୀ ଫୋପାଡ଼ି ଦେଇ ମାଛିଟାକୁ ଧରିବାକୁ ଡେଇଁ ପଡ଼େ । ବଜରନାଥ ବେତ ତଲୁ ଉଠାଇ ପାଟି କରି ଉଠେ । ପୁଣି ରାମଦାସ ବେତକୁ ବଇଁଶୀ କରି ତ୍ରିଭଙ୍ଗୀ ଠାଣିରେ ଛିଡ଼ା ହୁଏ । ଚମ୍ପାକଲୀ ପଟା ପଟାକିଆ ଘାଗରା ପିନ୍ଧି, କାନରେ ଫାସିଆ ଲଗାଇ, ଏଲମନିଅମର କୁଜାମୁଚ୍ଚା ଫୁଟା ଗ୍ଲାସକୁ ମୁଣ୍ଡରେ ଗୋଟେ ହାତରେ ଧରି ନାଚି ନାଚି ଆସେ । ବଜରନାଥ ଗୀତ ଧରେ- "ଆଗୟୀ ରାଧା ରାନୀ, ଯମୁନାକୋ ଭରନେ ପାନି ।" ଢୋଲକି ବେଶୀ ବେଶୀ ଢାଉଁ ଢାଉଁ ବାଜିଉଠେ । ରାମଦାସ, ଚମ୍ପାକଲୀ ବାଜା ସାଙ୍ଗରେ ଗୋଡ଼ ପକାଇ ନାଚନ୍ତି । ମଝିରେ ମଝିରେ ରାମଦାସ ଚମ୍ପାକଲୀର ଲାଙ୍ଗୁଡ଼କୁ ମାଡ଼ି ଦିଏ । ଚମ୍ପାକଲୀ ବୁଲି ପଡ଼ି ଦାନ୍ତ ନେଫେଡ଼ି ଖତେଇ ହୁଏ । ଶେଷ ନାଚ ହେଉଛି ରାମଦାସ ଚମ୍ପାକଲୀର ପ୍ରେମ ସୁଆଙ୍ଗ । ରାମଦାସ ମଦପିଇ ଢୋଳେଇ ଢୋଳେଇ ଆସେ । ଚମ୍ପାକଲୀ ଛାଞ୍ଚୁଣୀ ଧରି ବାଡ଼ାଏ । ରାମଦାସ ରୁଷି ଶୁଏ । ଚମ୍ପାକଲୀ ଖାଇବାକୁ ବାର ଖୁସାମତ କରେ । ଶେଷକୁ ଚମ୍ପାକଲୀ ମୁହଁ ଫୁଲାଇ ବାପ ଘରକୁ ବାହାରେ । ରାମଦାସ ରାଗଛାଡ଼ି ଚମ୍ପାକଲୀକୁ ଧରେ । ଅଭିମାନ ସବୁ କୁଆଡ଼େ ପାଣି ଫାଟିଯାଏ । ଦୁହେଁ ଡେଇଁ ଡେଇଁ ନାଚିଯାନ୍ତି । ବଜରନାଥ ମୁହଁରୁ ଗୀତ ଛୁଟିଥାଏ । ଆଖି ତାର ମଉଳି ପଡେ । ବେଳେବେଳେ ଲୁହ ଦି ଚାରି ଟୋପା ବି ଗଡ଼ି ଆସି ଦରପାକଲା ଛାତି ବାଳରେ ତାର ଅଟର୍କି ଯାଏ । ହୁଗୁଳିଲା ମୁଣ୍ଡର ଟାଇଆ ଫିଟାଇ ସେ ଆଖି ପୋଛେ । ରାମଦାସ ବଜରନାଥର କହିଲା ମୁତାବକ ପେଟରେ ଚାପଡ଼ ମାରି ପଇସା ମାଗେ । ପେଟକୁ ଦେଖାଇ ପଡ଼ିରହେ । ଗୋଟି ଗୋଟି କରି ଆଗରେ ଥିବା ଲୋକଙ୍କ ପାଖକୁ ଯାଇଁ ମୁଣ୍ଡିଆ ମାରେ । ଲୋକଭିଡ଼ ଆସ୍ତେ ଆସ୍ତେ କମିଯାଏ । ପଇସା ନ ଦେଇ ଲୋକେ ପଛରୁ ପଛରୁ ଖସିଯାନ୍ତି । ବେଳେବେଳେ ବଜରନାଥ ଆଖି ମାରିଦେଲେ ରାମଦାସ କାହାର କାହାର ଲୁଗାକୁ ଭିଡ଼ି ଧରେ । ଜଣେ ଦିଜଣ ମୁହଁ ମୁଲାଜାରେ ଦି' ଚାରି ପଇସା ଦେଇ ଦିଅନ୍ତି । ଆଉ କିଏ ରାଗି ଉଠିଲେ ବଜରନାଥ ଇସାରା ଦିଏ, ରାମଦାସ ଫେରିଆସେ । କେଉଁଠି କେଉଁଠି ପାଖରେ ପାନ ଦୋକାନ ଥିଲେ ଦୋକାନୀ ରାମଦାସ ହାତରେ ଖଣ୍ଡେ ଖଣ୍ଡେ ପାନ ଧରେଇ ଦିଏ । ବଜରନାଥ ନେଇ ଅଣ୍ଟାରେ ଖୋସେ । ଗୁଡ଼ିଆ ଦୋକାନୀ କିଏ କେବେ ଯଦି ନିମିକି କି ସିଙ୍ଗିଡ଼ାଟେ ଦେଲା ତ ରାମଦାସ ପାଉଁ ପାଉଁ ପାଟିରେ ପୁରାଇ ଦିଏ । ବଜରନାଥ ବେତ ଉଞ୍ଚାଇ ଗାଳି ଦିଏ- "ବଦମାସ୍ ଅକେଲା ସବ୍ ଖାଏଗା ।" ଚମ୍ପାକଲୀ କୁଦାମାରି ଖିଙ୍କାରି ମିଙ୍କାରି ହୁଏ । ବଜରନାଥ ଅଣ୍ଟାରୁ ପଇସା କାଢ଼ି କିଛି ଗୋଟାଏ କିଣି ଚମ୍ପାକଲୀକୁ ଦିଏ । ରାମଦାସ କଣେଇ କଣେଇ ଚାହିଁ ଛଡ଼େଇ ଆଣିବାକୁ ସୁବିଧା ଖୋଜୁଥାଏ । ବଜରନାଥ ତା ଗୁଣ ଜାଣେ । ସେ ଆଖି କଟମଟ କରି ରାମଦାସକୁ ଚାହେଁ । ରାମଦାସ ଚୁପ୍‌ଚାପ୍ ଚାଲେ ।

ସେଦିନ ଚମ୍ପାକଲୀକୁ ରାମଦାସ ଦିପୁଳା କାମୁଡ଼ି ଦେଲା । ବଜରନାଥ ଖୁବ୍ ପିଟିଲା । ରାମଦାସ ଉପରେ ମାଡ଼ ଦେଖି ଚମ୍ପାକଲୀ ପଳାଇଯାଇଁ ଗଛ ଡାଳରେ ଲୁଚି ଆଖି ମିଟ୍‌ମିଟ୍ କରୁଥାଏ । ମାରିସାରି ବଜରନାଥ ଗୁମ୍ ଖାଇ ବସିଗଲା । ସବୁବେଳେ

ଏଗୁଡ଼ାକ ଖାଲି ଝଗଡ଼ା ଲାଗିଲେ । ମାଡ଼ କିଣୁଛନ୍ତି । ସେ କଣ କରିବ ? ରାମଦାସ ଟିକିଏ ଦୂରରେ ତଳକୁ ମୁହଁପୋତି ବସି ଲମ୍ବା ଲମ୍ବା ଗୁଗୁରଚିଆ ଗଛ ଗୋଟାଏ ଲେଖା ଓପାଡ଼ି ଦାନ୍ତରେ ଚୋବାଇ ଫୋପାଡୁଥାଏ । ଚମ୍ପାକଲୀ ଏପାଖ ସେପାଖ ଚାହିଁ ଚୁପ୍‌ଚାପ୍ ଗଛରୁ ଓହ୍ଲାଇ ଆସିଲା । ବଜରନାଥକୁ ଚାହିଁ ଚାହିଁ ରାମଦାସ ପାଖରେ ବସିଲା । ରାମଦାସ ବୁଲି ପଡ଼ି ତା ମୁଣ୍ଡକୁ ତଳକୁ ମାଡ଼ିଦେଲା । ଆଗରେ ଝିଣ୍ଟିକାଟେ ଟିକିଏ ଉଡ଼ିଯାଇ ଘାସ ଉପରେ ପୁଣି ପଡ଼ିଲା । ରାମଦାସ ତା ପାଖକୁ କୁଦାଟେ ମାରିଲା । ଚମ୍ପାକଲୀ ରାମଦାସ ପଛକୁ ଡେଇଁ ପଡ଼ିଲା ।  ଝିଣ୍ଟିକାଟା ଆଗକୁ ଉଡ଼ିଗଲା । ରାମଦାସ ଚମ୍ପାକଲୀ ବଢ଼ାବଢ଼ି ହେଇ ତା ପଛେ ପଛେ ଗୋଡ଼ାଇଲେ । ଶେଷକୁ ନ ପାରି ଚମ୍ପାକଲୀ ଯାଇ ପଡ଼ିଆ କଡ଼କୁ ହୁଙ୍କାଟା ଉପରେ ବସିଲା । ରାମଦାସ ଝିଣ୍ଟିକା ପିଛା ଛାଡ଼ି ଚମ୍ପାକଲୀ ଲାଙ୍ଗୁଡ଼କୁ ଯାଇଁ ଟାଣିଦେଲା । ଦୁହେଁ ଯାକ ତଳେ ଓଲଟା ଓଲଟି ହୋଇ ଗଡ଼ାଗଡ଼ି ଲାଗିଲେ । ବଜରନାଥ ଆଖି ସରତି ଆସିଲା । ମିଛଟାରେ ସେ କେତେ ସତେ ମାରିଲା ? ସେ ତ ସବୁବେଳେ ବଦରାଗୀ । କରିବ କଣ ? ଯେତେ  ହେଲେ ମାଙ୍କଡ଼ ଦିଟା-କଣ ବା ଅପରାଧ କରି ପକାଇଲେ ? ସେ ଡାକିଲା- "ରାମଦାସ, ଆରେ ଚମ୍ପାକଲୀ, ଯାହାଁ ଆଓ ତ ।" ଚମ୍ପାକଲୀ ଦୌଡ଼ିଲା । ରାମଦାସ ଦି କୁଦାରେ ତାକୁ ଟପିଯାଇଁ ଆଗେ ଆସି ବଜରନାଥର କୋଡ଼ରେ ବସି ପଡ଼ିଲା । ଚମ୍ପାକଲୀ ବଜରନାଥ ଜଙ୍ଘରେ  ମୁଣ୍ଡ ଗେଞ୍ଜି ତଳେ ଶୋଇପଡ଼ି ବଜରନାଥକୁ କହିଲା କହିଲା ଆଖିରେ ଚାହିଁ ରହିଲା । ବଜରନାଥ ରାମଦାସର କାନକୁ ଧରି ଟେକି ଆଣି ମୁହଁରେ ମୁହଁ ଲଗାଇ ତା ଗାଲରେ ଛୋଟ ଛୋଟ ଚାପଡ଼ ଦେଇ କହି ଉଠିଲା- "ଡାକୁ, ଲୁଟେରା କାହାଁକା ।" ଚମ୍ପାକଲୀ ମୁଣ୍ଡରେ ଠେସ ମାରି ବଜରନାଥର କୋଡ଼ ଉପରକୁ ଉଠିଆସି ରାମଦାସର ଲାଙ୍ଗୁଡ଼କୁ ସାଉଁଳାଉ ଥାଏ ।

ବଜରନାଥ ଝାଡ଼ାଝପଟ କୁଆଡ଼େ ଟିକିଏ ଗଲା ତ ଆସିଲା ବେଳକୁ କିଛି ନା କିଛି ଗୋଟାଏ କାଣ୍ଡ ଘଟିଯାଇଥିବ । ଆଜି ଯଦି ଢୋଲକି ବାଡ଼େଇ ରାମଦାସ ଫଟେଇ ଦେଇଥିବ ତ କାଲି ଚମ୍ପାକଲୀ ବୁଢ଼ାର ଖଣ୍ଡିଆ ବିଡ଼ି ଖାଇ ଶିଖୁ ଶିଖୁ ଡିଆସିଲି କାଠିଗୁଡ଼ାକ ସବୁ ବିଛୁଡ଼ି ଦଳିମଳି ଦେଇଥିବ । ଆଜି ଚା ହାଣ୍ଡି ଭାଙ୍ଗିଲା ତ କାଲି ବୁଢ଼ାର କୁରୁତା ଖଣ୍ଡକ ଚିରା ହୋଇଥିବ । ବଜରନାଥ ଚିଡ଼େ, ଗାଳିଦିଏ, ମାରେ, କାନ୍ଦେ ବି । ରାତିରେ ଗୋଟାକ ପାଖରେ ମୁଣ୍ଡ ଦେଇ ଗୋଟାକୁ କୋଡ଼ରେ ପୁରେଇ ଶୁଏ । ହାତ ତାର ଅଜାଣତରେ ଆଉଁଷି ଦେଉଥାଏ । ଆଖିରୁ ତାର ଲୁହ ଖସିଆସେ ।

ସେଦିନ ରାମଦାସ ସକାଳଟାରୁ ଖେଁ ଖେଁ ପାଟି କମ୍ପେଇଲା । ବଜରନାଥ ଭାରି ଚିଡ଼ିଗଲା । ଆଖି ତାର ମାଡ଼ି ମାଡ଼ି ପଡୁଛି, କାଲି ନାଳ ପାରହୋଇ ସେ ପାଖ ଗାଁକୁ ଯାଇଥିଲା । ଆସିଲାବେଳେ ସଞ୍ଜୁଆ ବକତ ଦେଖି ବାଟରେ ତାଡ଼ି ଖଟିରୁ ପେଟେ ଠୁଙ୍କି ଦେଇ ଆସିଲା । ରାତିରେ ଆଉ ହୋସ୍ ନାହିଁ । ଖିଆପିଆ କଥା କିଏ ପଚାରେ ? ରାମଦାସ ବେଶୀ ବେଶୀ ଚିଲେଇଲା । ବଜରନାଥ ଆଖି ମଳି ମଳି ଉଠିଲା-" ନହିଁ ଖାୟେ ତେ କ୍ୟା

ଜାନ ଲେ ଲୋଗେ ?" ଆଗରେ ଚମ୍ପାକଲୀଟା ପଡ଼ିଛି, ରାମଦାସ ତା ଚାରିପାଖ ବୁଲି ବୁଲି ଖାଲି ଖେଁ ଖେଁ ହେଉଛି । ବଜରନାଥ ପାଖକୁ ଦୌଡ଼ିଗଲା । ଚମ୍ପାକଲୀଟା ଝିମେଇକି ପଡ଼ିଛି, ତାକୁ ଝାଡ଼ିଝୁଡ଼ି ଠିଆ କରାଇଲା । ଚମ୍ପାକଲୀର ଗୋଡ଼ ଠାକିଲା ନାହିଁ, ପଡ଼ିଗଲା । ବଜରନାଥର ଛାତି ଭିତର ଦେଇ ଭୟରେ ଗୋଟାଏ ଶିରି ଶିରି ପବନ ଖେଳିଗଲା । ସେ କାନ୍ଦୁଣୁ ମାନ୍ଦୁଣୁ ହେଇ କହି ପକାଇଲା-"କ୍ୟୋଁରେ ରାମଦାସ, କ୍ୟା ହୁଆ ?" ରାମଦାସ ଚମ୍ପାକଲୀର ମୁଣ୍ଡକୁ ଟେକି ଦେଇ ଖେଁ ଖେଁ ହୋଇ ଉଠିଲା, ବଜରନାଥ ପାଣି ଲୋଟେ ଆଣି ଚମ୍ପାକଲୀର ମୁଣ୍ଡରେ ଢାଳିଦେଲା । ଚମ୍ପାକଲୀ ଆଖି ଖୋଲି ମଟମଟ କରି ଚାହିଁଲା । ବଜରନାଥ ତା କାନ ଟିକିଏ ଫୁଙ୍କିଦେଇ ଆସି ଚା ବସାଇଲା । ମନଟା ଗୋଳେଇ ଘାଣ୍ଟି ହେଉଥାଏ । ଚୁଲି ଲଗାଇ ପୁଣି ଚମ୍ପାକଲୀ ପାଖକୁ ଉଠିଗଲା । ଚମ୍ପାକଲୀ ସେହିପରି ଆଖି ବୁଜି ପଡ଼ିଛି । ଚା ଖାଇଲାବେଳେ ବଜରନାଥ ହାତରୁ ଚା ଜାଗାଟା ଖସି ପଡ଼ିଲା । ଆଜିକୁ ପାଞ୍ଚ ବର୍ଷ ହେଲା ତା ସାଙ୍ଗରେ ଖାଇ ଆସିଛି । ଚମ୍ପାକଲୀଟା ବଳରେ ନ ପାରି ଖାଇ ପାରେନି ବୋଲି ତାକୁ ସେ ବେଳେବେଳେ ଆଗେ ଖାଇବାକୁ ଦେଇ ପଛେ ଖାଏ । ସେଦିନ ବଜରନାଥ ଦିନମାନ ଚମ୍ପାକଲୀ ପାଖରେ ବସି ରହିଲା । ରାମଦାସ ମଝିରେ ମଝିରେ ବୁଲି ଆସି ଚମ୍ପାକଲୀ ମୁହଁ ପାଖରେ ମୁହଁମାଡ଼ି ମଟମଟ କରି ଚାହେଁ, ପୁଣି କୁଦାଟେ ମାରି ଚାଲିଯାଏ । ବଜରନାଥ ଘାଟିକଲା-"କ୍ୟୋଁରେ ମଜାକ୍ ଉଡ଼ାତେ ହୋ ବଦମାସ୍ ? ଯହାଁ ଆଓ ।" ରାମଦାସ ଆସି ପାଖରେ ବସିଲା । ସଞ୍ଜ ବୁଡ଼ିବା ଆଗରୁ ଚମ୍ପାକଲୀ ଟିକିଏ କୁଉଁ କୁଉଁ ହେଇ ଏପାଖ ସେପାଖ ଛାଟିପିଟି ହେଲା । ବଜରନାଥ ତା ମୁହଁରେ ପାଣି ଛାଟୁଥାଏ । ରାମଦାସ ତା ଚାରିପାଖରେ ଖାଲି ବୁଲୁଥାଏ । ଚମ୍ପାକଲୀ ହଠାତ୍ ଗୋଟେ କଡ଼କୁ ଢଳି ପଡ଼ିଲା । ବଜରନାଥ ସମ୍ଭାଳି ପାରିଲନି । ଛୁଆଙ୍କ ଭଳି ଭୋ ଭୋ ହେଇ କାନ୍ଦି ଉଠିଲା । ରାମଦାସ ଖାଲି ତୁହାଇ ତୁହାଇ ଖେଁ ଖେଁ ହେଉଥାଏ ।

ଚମ୍ପାକଲୀ ମରିବାର ଆଜିକୁ ପାଞ୍ଚଦିନ ହେଲାଣି । ବଜରନାଥ କୁଆଡ଼େ ଖେଳ ଦେଖେଇବାକୁ ବାହାରିନି । ରାମଦାସ ଦୁଇ ତିନି ଦିନ ଚାରିଆଡ଼େ ବୁଲି ବୁଲି ଖୋଜିଲା, ଗଛର ଡାଳ ପତର, ହୁଙ୍କା, ପଡ଼ିଆ, ବିଲ ସବୁଠି ସେ କୁଦି କୁଦି ହୁଁ ହୁଁ ହେଲା । କେଉଁଠି ଜବାବ ପାଇଲାନି । ଚମ୍ପାକଲୀ ଯେଉଁଠି ଥାଉ ରାମଦାସ ହୁଁ କଲାତ ସେ ସେଠୁ ଆବାଜ ଦିଏ । ରାମଦାସ ଖୋଜି ଖୋଜି ପାଟ ପାଖକୁ ବଜରନାଥର ଅଜାଣତରେ ଚାଲିଗଲା । ଗୋଟାଏ କଡ଼ରେ ବସି 'ହୁଁ' କଲା । ସେପାଖ ଆଡୁ 'ହୁଁ' ଶୁଭିଲା । ସେ ଜୋରରେ ହୁଁ କଲା । ଆହୁରି ଜୋରରେ ତାକୁ ହୁଁ ଶୁଭିଲା । ସେ ଦୌଡ଼ି ଦୌଡ଼ି ପାଟ ସେପାଖକୁ ବୁଲି ବୁଲି ଗଲା । ସେ ପାଖରେ ବରକୋଳି ଗଛ, ପଳାଶ ବୁଦା ସବୁଠି ଖୋଜିଲା । ପୁଣି ହୁଁ କଲା । ଏ ପାଖରେ ହୁଁ ଶୁଭିଲା । ଏ ପାଖକୁ ଆସି ଖୋଜିଲା । ପାଇଲା ନାହିଁ । ବଜରନାଥ ଖୋଜି ଖୋଜି ଆସି ଡାକିଲା-'ରାମଦାସ', ରାମଦାସ ଜବାବ ଦେଲା, ବଜରନାଥ ଆସିଲା । ରାମଦାସ ଗଛର ତଳ ଡାଳରେ ବସି ପାଟର ପାଣି ସେପାଖକୁ ଚାହିଁଥାଏ । ବଜରନାଥ

ଡାକିଲା "ଆ, ନିଚେ ଆ, ମେରେ ପାଶ୍ ଆ।" ରାମଦାସ ହୁଁ କରି ପାଣିଆଡ଼େ ଚାହିଁ ରହିଲା, ବଜରନାଥର ଖୋଲା ଖୋଲା ଆଖି ବୁଡ଼ି ଧାର ଛୁଟି ଆସିଲା। ବଜରନାଥ ହାତ ବଢ଼ାଇ ଭାଙ୍ଗିଲା ଭାଙ୍ଗିଲା ଗଳାରେ କହିଲା-"ଓ ନହିଁ ଆୟେଗୀ ରେ, ବେଟା ଆ।" ସେ କହି ପାରିଲାନି। ରାମଦାସ ଥିରିଥିରି ଗଛ ଡାଳରୁ ଓହ୍ଲେଇ ଆସିଲା। ବଜରନାଥ ତାକୁ କୁଣ୍ଡେଇ ପକାଇ ଭିଡ଼ି ଧଇଲା।

ରାମଦାସ ଆଜିକାଲି ଏକୁଟିଆ ବସେ। ଚା ଖାଇବାକୁ ଡାକିଲେ କେବେ ଯାଏ ତ କେବେ ଯାଏ ନି,-ବେଳେବେଳେ ଚା'କୁ ଢାଳିଦେଇ ଦୌଡ଼ି ଦୌଡ଼ି ଗଛର ଡାଳରେ କାହାକୁ ଖୋଜେ। ଖେଁ ଖେଁ ହୁଏ। ପୁଣି କଣ ଭାବି ହୁଙ୍କା ଉପରେ ବସେ। ବଜରନାଥ ଯେତେ ଡାକିଲେ ଶୁଣେନି। ଗୋଟାଏ ଧିଆନରେ ସେ ପାଟଆଡ଼େ ଚାହିଁ ରହେ। ବଜରନାଥ ଚମ୍ପାକଲୀ ମଲାପରେ ତାକୁ ବାନ୍ଧି ପକାଇ ଚମ୍ପାକଲୀକୁ ପାଟଆଡ଼େ ନେଇ ଯାଇଥିଲା। ସେ ଦେଖିଛି। ବେଳେବେଳେ ବଜରନାଥ ଉପରେ ରାଗିଯାଇ ସେ ଦାନ୍ତ କଡ଼ମଡ଼ କରେ। ଆଜିକାଲି ଥରେ ଗଛ ଉପରକୁ ଉଠିଲା ତ ରାମଦାସ ଆଉ ତଳକୁ ସହଜରେ ଓହ୍ଲାଏ ନାହିଁ। ବଜରନାଥ ଏଣିକି ତାକୁ ବାନ୍ଧିକି ରଖେ, ନାଚତ ସବୁଦିନେ ହୁଏନି। ବଜରନାଥର ନାଚ କରେଇବାକୁ ଇଚ୍ଛା ନ ଥିଲେ ବି ପେଟ ତ ଅଛି। ରାମଦାସ ନାଚିଲା ବେଳେ ଆଜିକାଲି ମଝିରେ ମଝିରେ କଥା ମାନେନି। ନାଚୁ ନାଚୁ ବୁଢ଼ାର କନାଧଡ଼ି ସିଆ ମୁଣିରେ ହାତ ପୁରେଇ ଚମ୍ପାକଲୀର ଘାଘରାକୁ ଆଣି ଏ ପାଖ ସେପାଖ ଦେଖେ। ଶେଷକୁ ଦାନ୍ତରେ କାମୁଡ଼ି ଟାଣେ। ବଜରନାଥ ଛଡ଼ାଇ ଆଣେ। ତାପରେ ସେ ଯେତେ କହିଲେ ରାମଦାସ ଯମ୍ପା ଶୁଣେନି। ବଜରନାଥ ବି ତାକୁ ଆଉ ବେଶୀ ଗାଳି ଫଜିତ ଦେବାକୁ ଇଚ୍ଛା କରେନି। କିଏ କେତେବେଳେ କିଛି ଗୋଟେ ଖାଇବାକୁ ଦେଲା ତ କଳେ ଦିକଳ କାମୁଡ଼ି ଆଗକୁ ପଛକୁ ଚାହିଁ ରାମଦାସ ଫିଙ୍ଗିଦିଏ। ବଜରନାଥ ଆଜିକାଲି ତାର ଭାରି ଯତ୍ନ ନିଏ। ତାକୁ ପାଖରେ ବସାଇ ଖୁଆଏ, କୋଳରେ ପୁରାଇ ଶୋଇ ପକାଏ।

ଆଜିକି ଦିଦିନ ହେଲା ଯୁଆଡ଼େ ଗଲା ଖେଳ ଖାଲି ଭଣ୍ଡୁର ହେଲା। ରାମଦାସ ଦିନକୁଦିନ ବେଶୀ ବେଶୀ ଅମାନିଆ ହେଉଛି। ଦିଦିନ ହେଲା ନାଚିବା ସୁରୁ ହେଲା ତ ସାଙ୍ଗେ ସାଙ୍ଗେ ବନ୍ଦ କରିଦେଇ ବସୁଛି। ଯାହା କହିଲେ ଖାଲି କୃଷନାଚ, ଚମ୍ପାକଲୀ ସାଙ୍ଗରେ ତାର ସୁଆଙ୍ଗ ନାଚକୁ ମିଶେଇ ନାଚୁଛି। ବଜରନାଥ କଥା କିଛି ନାଚ ସାଙ୍ଗରେ ଖାପ ଖାଉନି। ଦିଦିନ ହେଲା ଚାଉଳ ପୋଷେ ମିଳିନି କି ପଇସାଟେ କେହି ଦେଇନି। ସମସ୍ତେ ନାକ ଟେକି ପଳାଇ ଯାଉଛନ୍ତି। ବଜରନାଥ ଭାରି ଚିଡ଼ିଗଲା। ଆସିଲାବେଳେ ନାଳ ମୁଣ୍ଡ ଖଟି ପଡ଼ିଲା। ମୁଣି ଅଣ୍ଡାଳି ଉଣ୍ଡୁଳି ଜମା ଦିଅଣା ପଇସା ପାଇଲା। କହି ପୋଛି ପେଟ ଭର୍ତ୍ତି କରି ବଜରନାଥ ଆଠ ଦଶ ସଢ଼େଇ ତାଡ଼ି ପିଇ ଢଳିଢଳି ଫେରିଲା। ବାଟରେ ଜଣେ ମୁଢ଼ି ମୁଠେ ଦେଇଥିଲା। ରହୁଥିବା ଗଛ ମୂଳରେ ପହଞ୍ଚି ମୁଢ଼ି ମୁଠାକ ସେ ରାମଦାସକୁ ଦେଲା। ରାମଦାସ ଆସିଲାବେଳେ ପାଟ ପାଖରେ କାହିଁକି ଭାରି ଟାଣି ହେଲା। ମୋଟେ ଆଗକୁ ଚାଲିଲା

ନାହିଁ, ଦି ଚାରି ଚାପଡ଼ ଲଗେଇ ବଜରନାଥ ତାକୁ ଘୋଷାରି ନେଇ ଆସିଲା । ମୁଢ଼ି ପାଇଛି ତ ରାମଦାସ ନାତ ମାରି ମୁଢ଼ିକୁ ଫିଙ୍ଗି ଦେଲା । ଯାଇଁ ହୁଙ୍କା ଉପରେ ବସିଲା । ବେକରେ ସେଇମିତି ଝଞ୍ଜିର ଓ ଦଉଡ଼ି ଲାଗିଛି । ଗୋଡ଼ରେ ଠେସମାରି କଡ଼ରୁ ଛୋଟ ଛୋଟ ହୁଙ୍କାକୁ ଭାଙ୍ଗିଲା । ବଜରନାଥ ମୁଣ୍ଡକୁ ପିତ ଚଢ଼ିଗଲା । ସେ ବେତ ଧରି ସିଧା ଉଠିଗଲା । ରାମଦାସ ବଜରନାଥକୁ ଦେଖି ଦାନ୍ତ କଡ଼ମଡ଼ କରି ତା ପାଖକୁ କୁଦି ଆସିଲା । "ଆଏ, ତୁ ମୁଝେ ଦାନ୍ତ ଦେଖାତା ହେ-ମୁଝେ ମାରେଗା ବେଇମାନ ।" –ବଜରନାଥ ଦଉଡ଼ିଟାକୁ ଧରି ପକାଇଲା । ଏଣେ ନିଶା ଜୋରରେ ତାକୁ ଘାରି ଆସୁଥିଲା । ସେ ପିଟିବା ଆରମ୍ଭ କରିଦେଲା । ବେତ ଫାଟି ଛତର ଛାଉଳି ହୋଇଗଲା । ବେକ କଡ଼ାକୁ ଧରି ଗଛ ସିଅରେ ରାମଦାସକୁ ଟେକି ବଜରନାଥ ଦି ଚାରି କଚଡ଼ା ଦେଲା । ରାମଦାସ ପ୍ରଥମେ ପ୍ରଥମେ ଦାନ୍ତ କାମୁଡ଼ି ଖେଁ ଖେଁ ହେଉଥିଲା ଶେଷକୁ କୁଁ କୁଁ ହୋଇ ଖାଲ ତଳେ ଗଡ଼ି ଯାଉଥାଏ । ଟାଣି ଆଣି ତାକୁ ଭିଡ଼ିକି ବାନ୍ଧି ପକାଇ ବଜରନାଥ ଆସି ଲଥ୍ କରି ପଡ଼ିଗଲା । ନିଶାରେ ଆଖି ତାର ବନ୍ଦ ହୋଇ ଆସିଲା ।

ବଜରନାଥ ନିଦ ଚାଉଁକରି ଭାଙ୍ଗିଗଲା । ବରଷକ ପରେ ସେ ଆଜି ଲଛମୀକୁ ସପନରେ ଦେଖିଲା । ମଲାବେଳର ସପନ । ଲଛମୀ ତଳେ ଶୋଇଛି । ସେ ବସି ବସି ଛୁଆଙ୍କଭଳି ରଡ଼ି ଛାଡୁଥାଏ । ଲଛମୀକୁ ଉଠେଇକି ନେଇଗଲେ । ସେ ପାଗଳ ପରି ତାକୁ ଭିଡ଼ି ଧଇଲା । କାନ୍ଦି କାନ୍ଦି ପାଟି କମ୍ପେଇଲା-"କଭି ନହିଁ ଛୋଡୁଁଗା ।" ବୁଦ୍ଧୁରାମ ତାକୁ ଜାବୁଡ଼ି ଧଇଲା । ବଜରନାଥ ଆଖି ପୋଛିଲା । ସପନରେ ସେ କାନ୍ଦି ପକାଇଛି । ଆଖି ଗାଲ ତାର ଲୁହରେ ଓଦା ହୋଇ ଯାଇଛି । ପନ୍ଦର ବର୍ଷ ହେଲା ଲଛମୀ ମଲାଣି । ତା ଆଖି ଆଗରେ କେତେ କଥା ନାଚି ଉଠିଲା । ସେ ବାଛି ବାଛି ଲଛମୀକୁ ସାଦି କରିଥିଲା । ସେତେବେଳେ ସେ ପୁରା ଯଓ୍ୱାନ୍ । ଲଛମୀ ବାଳରେ ପେନ୍ଥା ପେନ୍ଥା ଫୁଲ ଖୋସି, ଓଠରେ ହସ ଲେସି ତା ପାଖରେ ବସି ବସି ହସି ପକାଏ । ବଜରନାଥର ଆଖି ସପନରେ ପୋତି ହୋଇ ପଡ଼ିଲା । ଲଛମୀର ମାଙ୍ଗନ୍ ଲାଗି ତୁକାରାମ କେତେ କୋସିସ୍ କରି ନଥିଲା । ତାର ବାପା ବି ଜବାବ୍ ଦେଇଥିଲା । ବଜରନାଥର ମୁଣ୍ଡ ଘୁରେଇ ଗଲା । ନାଲା ପାଖରେ ସେ ଲଛମୀକୁ ସେଦିନ ସଞ୍ଜବେଳେ ତାର ଦିଲ୍‌ର ଦରଦ କହି ପକାଇଲା । ଲଛମୀ ହସି ଦେଇ ଚାଲିଗଲା । ଶେଷରେ ଲଛମୀ ଜିଦ୍ ଧଇଲା । ସେ ତାକୁ ସାଦି କଲା । ବଜରନାଥ ଗଲାଦିନର କଥା ଭାବି ଚାଲିଛି । ଓଠ ତାର ହସରେ ଥରି ଥରି ଉଠୁଥାଏ । ତାପରେ ସେ ଦିନ୍ ଦିନ୍ ମଦ ପିଇ ଫେରେ । ଟିକିଏ କଥାରେ ଖାମ୍ ଖାମ୍ ରାଗିଯାଏ । ବଜାର ସଉଦା ପାଇଁ ପଇସା ନେଇ କିଛି ନ ଆଣି ମଦ ପିଇ ଢଳି ଢଳି ଆସି ଘରେ ପହଞ୍ଚେ । ଥରେ ଥରେ ଦିନମାନ ମଦ ପିଇ ବେହୋସ୍ ହୋଇପଡ଼େ । ଲଛମୀ ଭାରି ଚିଡ଼ି ଯାଏ । ବେଳେ ବେଳେ ଛାଞ୍ଚୁଣି ଉଠାଏ । ସେ ରାଗିଯାଇଁ ନିର୍ଘୁମ୍ ବାଡ଼େଇ ରାଗିକରି ଶୁଏ । ଲଛମୀ କାନିରେ ଲୁହ ପୋଛି ପୋଛି ଖାନା ପକାଏ । ତାକୁ କେତେ ଖୋସାମଦ କରେ । ଗୋଡ଼ ଧରେ, ଶେଷକୁ ବାପ ଘରକୁ

ବାହାରେ, ତାର ସବୁ ରାଗ ଉଭେଇ ଯାଏ । ସେ ବଳେ ବଳେ ଖାଇ ବସେ । ଲଛମୀ ପରଷି ଦେଇ ଚାଲିଗଲା ବେଳେ ତାକୁ ଧରି ପକାଇ ତା ପାଟିରେ ସେ ତରକାରୀ ଗୁଞ୍ଜେ । ଲଛମୀ ମୁହଁ ବୁଲାଏ, ସେ ତା ଓଠକୁ ଜବରଦସ୍ତି ଠେଲି ଖୋଇଦିଏ । ଲଛମୀ ଗାଲଉଁ ଗାଲଉଁ ହସି ପକାଏ । ସେ ଖେଁ ଖେଁ ହୋଇ ହସେ ।

ବଜରନାଥ ହସି ପକାଇଲା । ରାମଦାସ ବେକର ଲୁହା କଡ଼ାକୁ ଟାଣିଦେଲା । ଝଣ ଝଣ ହେଇ ଉଠିଲା । ବଜରନଥର ଭାବନାର ଅଗ ଟୁଙ୍କି ହୋଇଗଲା । ସେ ରାମଦାସ ପାଖକୁ ଗଲା । ରାମଦାସ ଲୁହା କଡ଼ାକୁ ଟାଣି ଟାଣି ହାଲିଆ ହୋଇ ପଡ଼ିଛି । ବଜରନାଥ ରାମଦାସକୁ ଚାହିଁ ରହିଲା । ତା ଆଖି ଆଗରେ ଲଛମୀ କଥା ପୁଣି ନାଚି ଉଠିଲା । ଲଛମୀ ଜରରେ ପଡ଼ି ଦିନ ଦିଟାରେ ମରିଗଲା । ତାକୁ କୁଣ୍ଢେଇ ଅଟକାଇ ତାଠୁଁ ତା ଲଛମୀକୁ ଛଡ଼ାଇ ନେଲେ । ଦରଦ ବଜରନାଥ ଛାତିରେ ଉଛୁଳି ପଡ଼ିଲା । ସେ ରାମଦାସକୁ କୋଡ଼କୁ ଭିଡ଼ି ଆଣିଲା । ଲଛମୀ ଗଲାପରେ ସେ କାହାରି କଥା ମାନିଲାନି । ଏକମୁହାଁ ହେଇ ସେ, ସେ ଜାଗା ଛାଡ଼ି ପାଗଳା ପରି ଖାଲି ବୁଲିଲା । କେତେଦିନ ପରେ ସେ ରାମଦାସ ଓ ଚମ୍ପାକଲୀକୁ ପାଇଲା । ତାପରେ ଏଇ ରାମଦାସ, ଚମ୍ପାକଲୀକୁ ନେଇ ସେ ତା ଜୀବନ କଟାଇ ଆସିଛି । ରାମଦାସ, ଚମ୍ପାକଲୀର ନାଚ ଭିତରେ ସେ ତା ଜୀବନକୁ ଦିନ ଦିନ ଦେଖିଛି । ଚମ୍ପାକଲୀର ମୁହଁ ଫୁଲା ତଳେ ସେ ତା ଲଛମୀର ଅଭିମାନକୁ ବଞ୍ଚାଇ ରଖିଛି । ରାମଦାସ ମଦ ପିଇ ଢଳି ଢଳି ଆସିଲେ ବଜରନାଥର ଗଲା ଦିନର କଥା ମନେପଡ଼େ । ଗୀତ ଗାଉ ଗାଉ ସେ ଅନୁଭବ କରେ ସେ ଆଜି ମଦ ପିଇଛି– ଲଛମୀ ରାଗ କରିଛି ।

ବଜରନାଥ ଭାବନାରେ ନିଜକୁ ହଜାଇ ଦେଲା । ରାମଦାସ ତା କୁଣ୍ଢ ଭିତରୁ ଖସି ଯାଇଁ ଡେଇଁ ପଡ଼ିଲା । ଝଂଜିର ଛୋଟ ହୋଇ ବନ୍ଧା ହେଇଥିବାରୁ ଓଲଟି ତଳେ ପଡ଼ିଗଲା । ବଜରନାଥ ଉଠିପଡ଼ି ତାକୁ ଟେକି ଆଣିଲା । ଆସ୍ତେ ଆସ୍ତେ ତା ବେକରୁ ସେ ଝଂଜିର ଫିଟାଇ ଦେଲା । ତାପରେ ଛାତିଆଡ଼େ ଖୁବ୍ ଜୋରରେ ତାକୁ ଭିଡ଼ିନେଲା । ଛାଡ଼ି ଦେବାକୁ ଯାଉଥିଲା ପୁଣି ଚାପି ଧଇଲା । ସେ ସତେ ଛାଡ଼ିଦେବ ! ରାମଦାସ ଗଲେ ତାକୁ ପୋଷିବ କିଏ ? ତା ସାଙ୍ଗରେ ଚା ଖାଇବ କିଏ ? ଚା କୁରୁତା ଚିରିବ କିଏ ? କାହାକୁ ସେ ରାଗିଲେ ମାରିବ ? ବଜରନାଥ ଆଖି ବୁଡ଼େଇ ଲୁହର ବଢ଼ି ମାଡ଼ି ଆସିଲା । ରାମଦାସକୁ କୁଣ୍ଢେଇ ସେ ଭୋ ଭୋ କାନ୍ଦି ଉଠିଲା । ଚମ୍ପାକଲୀ ମରିଛି । ଲଛମୀ ମରି ଯାଇଥିଲା... ସେ ଘର ଛାଡ଼ିଥିଲା । ତା ମୁଣ୍ଡ ଘୂରେଇ ଗଲା । ଲଛମୀ ମଲା, ସେ ପାଗଳ ହୋଇଗଲା । ସେ ପଳାଇ ଆସିଲା । ଚମ୍ପାକଲୀ ମରିଛି... ରାମଦାସ ଯାଉ । ହାତ ତାର କୋହଳି ଗଲା । ରାମଦାସ ଆସ୍ତେ ଆସ୍ତେ ଯାଇଁ ହୁଙ୍କା ଉପରେ ବସିଲା । ଉପରେ ଭାସିଗଲା ମେଘ ଫାଙ୍କରୁ ଜହ୍ନ ଖସରି ଆସିଲା । ବଜରନାଥ ଗୋଡ଼ ଚିପି ଚିପି ହୁଙ୍କା କଡିରେ ରାମଦାସର ପଛ ପାଖରେ ଠିଆ ହେଲା । ଦୂରରେ ପାଟ ପାଣି ଦିହରେ ଜହ୍ନ ଆଲୁଅ ଗୋଳେଇ ହେଇ ଯାଇଛି । ସେପାଖ ପଳାଶ ଗଛ ଆଡ଼କୁ ରାମଦାସ ଚାହିଁକି ବସିଛି । ବଜରନାଥ ଆଖିର ଲୁହ ପୋଛି ରାମଦାସକୁ

ଘଡ଼ିଏ ଚାହିଁଲା । ଆସ୍ତେ ଆସ୍ତେ ଫେରିଆସି ଜିନିଷପତ୍ର ସବୁ ଗୋଟାଇ ଭାରରେ ଲଦିଲା । ରାମଦାସ, ଚମ୍ପାକଲୀର ଯେତେ ନାଚିବା ଜିନିଷ ସବୁ କାଢ଼ି ତଳେ ଥୋଇଦେଲା । ଲୁହ ଟପଟପ ଖସି ଛାତି ତାର ଭିଜି ଯାଉଥାଏ । ରାମଦାସର ଫତେଇ, ଚମ୍ପାକଲୀର ଘାଘରାକୁ ଧରି ମୁହଁରେ ଲଗେଇଲା । ତଳେ ଥୋଇ ଦେଇ ହଠାତ୍ ଭାର କାନ୍ଧରେ ଦେଇ ଉଠି ପଡ଼ିଲା । ରାମଦାସର ନୂଆ ଫତେଇ ପାଇଁ ଏଥର ଭଲ କନା କିଣିଥିଲା । ମନେ ପଡ଼ିଲା । ଖଣ୍ଡିଆ ପେଟରା ଖୋଲି ତାକୁ କାଢ଼ି ତଳେ ରଖିଦେଲା । ସେ ରାମଦାସ ଆଡ଼େ ଚାହିଁ ମୁହଁ ବୁଲେଇଲା । ତାପରେ ରାସ୍ତା ଉପରକୁ ଉଠି ଝୁଣ୍ଟି ପଡ଼ି ପଛକୁ ଚାହିଁଲା । ରାମଦାସ ପାଟ ଆଡ଼କୁ ସେଇମିତି ଚାହିଁକି ବସିଛି । ଆଖି ଲୁହରେ ଢାଙ୍କି ହେଇଗଲା । ଜହ୍ନ ଖଣ୍ଡେ ମେଘ ପଛରେ ଛପି ଗଲା । ବଜରନଥ ପୁଣି ପଛକୁ ଚାହିଁଲା । ରାମଦାସ ଛାଇ ଭଳି ଦିଶିଲା । ଲଛମୀ ମରିଥିଲା । ସେ ପଳାଇଥିଲା । ବଜରନାଥ ଆଗକୁ ଚାଲିଲା ।

●●●

# ବର କନ୍ୟା

ପଦ୍ମନାଭ ପାଟିକରି ଉଠିଲା-"ଏ ଶଳା ମାଙ୍କଡ଼ପଲ କଂସାସୁର ଭଳି ରାଜ୍ୟକୁ ନାଶ କରିବେ ଦେଖାଗଲାଣି । କେଡ଼େ ବଡ଼ ଡାହିଟା ଶଳା ଭାଙ୍ଗି ଖସେଇ ପକେଇଛନ୍ତି ?" ବଡ଼ ବର ଡାଳ ଖଣ୍ଡେ ତଳେ ପଡ଼ିଛି । ମୂଳ ପାଖରୁ କିଛି ଅଂଶ ଛେଲି ହେଇଯାଇଛି । ଛେଲି ହେଇ ଯାଇଥିବା ଜାଗାରେ ଚାରି ଆଡ଼ରୁ ବୁନ୍ଦେ ବୁନ୍ଦେ ଧଳା ଧଳା କ୍ଷୀର ସରତି ବେଶୀ ହେଇଗଲେ ବଡ଼ ଟୋପା ହେଇ ତଳକୁ ଥୋପି ପଡୁଛି । ପଦ୍ମନାଭ ବାଁ ହାତ ମଝି ଆଙ୍ଗୁଳିରେ ଡାଳରୁ କ୍ଷୀର ପୋଛି ମାଟିରେ ଆଙ୍ଗୁଳି ଘଷୁ ଘଷୁ ମାଙ୍କଡ଼ କଥା ଭାବି ରାଗରେ ଓଠ କାମୁଡ଼ିଲା । କେଉଁଠୁ ଡାଳଟା ଭାଙ୍ଗିଛି ଜାଣିବ ବୋଲି ଉପରକୁ ଅନିସା କଲା । ଜାଣି ପାରିଲାନି । ଖୁବ୍ ବଡ଼ ନ ହେଲେ ବି ଛୋଟ ଗଛ ନୁହେଁ । ପତ୍ର ଖେନ୍ଦି ହୋଇ ଯାଇଛି । ବରଗଛଟି ଆସ୍ତେ ଆସ୍ତେ ଚକଡ଼ା ମାଡ଼ି ବଢ଼ି ବଢ଼ି ଯାଉଛି । ଓସ୍ତ ଗଛଟି ଡେଙ୍ଗାରେ ଖାଲି ବଢୁଛି । ବରଗଛର ଓହଳ ଭିତରେ ଓସ୍ତ ଗଛଟି ଛନ୍ଦି ହେଇ ରହିଛି । ବରଗଛ ଅଶ୍ୱସ୍ତକୁ ଜୋରର୍‌ରେ ଜାବୁଡ଼ି ଧରିଛି । ଦୁଇଟି ଗଛ ଗୋଟିଏ ଗଛର ଦୁଇଟି ଶାଖା ପରି ଆଗ ପଛ ହେଇ ବଢୁଛନ୍ତି । ଗଛ ମୂଳରେ ପଦ୍ମନାଭ ମାଟିର ଛୋଟିଆ ବେଦୀଟିଏ କରି ଗୋବରରେ ଲିପି ଦେଇଛି । କାମ ଦାମ ସାରି ଯେତେବେଳେ ପାରେ ସେତେବେଳେ ଆସି ସେଠି ଘଡ଼ିଏ ବସିଯାଏ । ଗାମୁଛା ପକାଇ ପଦ୍ମନାଭ ବେଦୀ ଉପରେ ଟିକିଏ ଗଡ଼େଇ ତଡ଼େଇ ହେଲା । ଗଛରେ ପେନ୍ଥା ପେନ୍ଥା ଫଳ ଲଦି ହେଇଛି । ପ୍ରତି ଛୋଟ ଛୋଟ ଡାଳର ଅଗରେ ପତରର ଆଗରେ ଓ ପଛରେ ନାଲ ନାଲ ଫଳ ଚକ୍ ଚକ୍ କରୁଛି । ଛୋଟ ଛୋଟ ଚଢ଼େଇ ଏ ପେନ୍ଥାରୁ ସେ ପେନ୍ଥାକୁ ଡେଇଁ ଡେଇଁ ପାଚିଲା ଫଳ ଦେଖି ଥଣ୍ଟ ଫୁଟାଇ ଚାଲିଛନ୍ତି । ଫଳର ନାଲ ଚୋପା ଫାଟି ମେଞ୍ଚା ମେଞ୍ଚା ହଳଦିଆ ଶସ ଥଣ୍ଟରୁ ତଳକୁ ଛିଟିକି ଆସୁଛି । କେତେବେଳେ କିମିତି ଡାମରା କାଉ ଦିଟା ଫଳ ଖସିବାବେଳେ ଲୋଟଣି ଭାଙ୍ଗି ତଳେ ପଡ଼ିବା ଆଗରୁ ଝାମ୍ପି ନେଉଛନ୍ତି । ଓସ୍ତ ଗଛର ଶେଷ ଉପର ଡାଳଟା ଯେଉଠି ଦୁଇ କେନା ହେଇ ଯାଇଛି, ତାର ମଝିରେ କୁଟା ଆଉ କାଠିରେ ଗୋବରା ଚଢ଼େଇ ଛୋଟ ବସାଟିଏ କରିଛି । ପଦ୍ମନାଭ ଏଇମିତି ଏଇ ଗଛ ତଳେ ଶୋଇ ଶୋଇ ଦେଖିଛି, ପ୍ରଥମେ ଯେଉଁଦିନ ମାଈ ଚଢ଼େଇଟା ଖଣ୍ଡେ କାଠି ଥଣ୍ଟରେ ଧରି ଆସି ସେଠି ବସିଲା । ବସା ପୂରା ହେଇଗଲା ପରେ ଦିଟା ଚଢ଼େଇ ବରାବର ସେଠି କୁଉଁକୁଆଁ ହେଉଥାନ୍ତି । ତା ପରେ ଦିନେ ଅଣ୍ଡା ଖୋଳ କେତେଟା ବେଦୀ ଉପରେ ଆସି ପଡ଼ିଲା । ପଦ୍ମନାଭ ସେଦିନ କାହିଁକି ଆପଣା ଛାଏଁ ହସି

ପକାଇଲା । ସେ ଗଛ ଲଗାଇଥିଲା । ତାରି ଗଛ ଉପରେ ଆଶ୍ରା ନେଇ ଗୋବରା ଛୁଆ କରିଛି । ଛୁଆ ଦିଟା ବଡ଼ ହେଇଗଲେଣି । ଖଣ୍ଡିଉଡ଼ା ଦେଉଛନ୍ତି । ମା'କୁ ତଳ ଡାଳରେ ଦେଖି ଥଣ୍ଟ ଖୋଲି ଚେଁଚାଁ ହେଇ ଉଠିଲେ । ପଣା ସଂକ୍ରାନ୍ତି ଦିନ ପଦ୍ମନାଭ ବରଗଛର ଗଣ୍ଡିରେ ହାଣ୍ଡିଟେ ବାନ୍ଧି ଦେଇଥିଲା । ହାଣ୍ଡିର ପଛରେ କଣାକରି କୁଟା ଖଣ୍ଡେ ଖୋସି ଦେଇଥିଲା । ହାଣ୍ଡିରେ ପ୍ରତିଦିନ ଗାଧୋଇ ସାରି ଆସି ପଦ୍ମନାଭ ପାଣି ଢାଳେ । କୁଟା ଦେଇ ଟୋପା ଟୋପା ପାଣି ଗଛର ଗଣ୍ଡି ଦେଇ ମୂଳକୁ ନିଗିଡ଼ି ଆସେ । ଏତେ ବଡ଼ ଗଛ ଦୁଇଟା । ଚେର ଯାଇଁ ପାତାଳରେ ଫୁଟିବଣି । ତେବେ ବି ପଦ୍ମନାଭ ବୁନ୍ଦା ବୁନ୍ଦା ପାଣି ଗଛ ମୂଳରେ ପଡ଼ିବାର ଦେଖି ଖୁସି ହୁଏ । ହାଣ୍ଡିଟା ଭିତରେ ଗୁଣ୍ଡୁଚି ମୂଷାଟେ ମୁହଁ ଗଳାଇ ଖଡ଼ ଖଡ଼ କଲା । ଠିକ୍ ଉପର ଡାଳରୁ ଡାମରା କାଉଟା ଉଡ଼ି ଆସି ହାଣ୍ଡି ଦେହରେ ଘଷି ହୋଇ ଉଡ଼ିଗଲା । ଗୁଣ୍ଡୁଚି ମୂଷାଟା ବାହାରି ନପାରି ଲାଙ୍ଗୁଡ଼କୁ ଫୁଲାଇ ଦେଲା । ରୁମଗୁଡ଼ାକ ଠିଆ ହୋଇଗଲା । ହାଣ୍ଡି ଭିତରୁ ଚିଁ ଚିଁ ହେଇ ଉଠିଲା । ତାରି ସାଙ୍ଗରେ ତାଳ ପକାଇ ଗଛର ଯେତେ ଚଢ଼େଇ, ସମସ୍ତେ ପାଟି କରି ଉଠିଲେ । ଗଛର ପତର ସନ୍ଧିରୁ ଚାରିଆଡ଼େ ପକ୍ଷୀର ବୋବାଳି ଉଛୁଳି ପଡ଼ିଲା । ଗଛର ଏ ଡାଳରୁ ସେ ଡାଳକୁ ଆଉ ଯେତେ ଗୁଣ୍ଡୁଚି ମୂଷା ଧାଁ ଧଉଡ଼ ଲଗାଇଲେ । ମଠା ମୁଠା ପାକଲା ଫଳ ମୂଳ ପିଣ୍ଡି ଉପରେ କୁଢ଼େଇ ହେଇ ପଡୁଥାଏ । ପଦ୍ମନାଭର ଓଠ କଡ଼ରୁ ହସ ପିଚିକି ପଡ଼ିଲା । କେଡ଼େ ବକଟେ ଗଛ ଆଣି ସେ ଲଗେଇଥିଲା । କେତେଟା ବର୍ଷ ଭିତରେ କେଡ଼େ ବଡ଼ ସତେ ହୋଇଗଲା ମଁ । ଆଏଁ –ସେ ଜିଭ କାମୁଡ଼ିଲା । ନିଜେ ଖୁଣି ପକାଉଛି । ସେ ଉଠିଯାଇଁ ପାଖ ଗଡ଼ିଆରୁ ଲୋଟାରେ ପାଣି ଆଣି ହାଣ୍ଡିରେ ଢାଳିଲା । କୁଟା ଦେଇ ପାଣି ଟପ୍ ଟପ୍ କରି ଝରି ପଡ଼ିଲା । ବିଲ ପାଖକୁ ମୋଟା ଡାଳଟେ ଉପରୁ ବାଙ୍କି ଆସି ମାଟିରୁ ଟିକିଏ ଛାଡ଼ି ପୁଣି ବାଙ୍କି ଉପରକୁ ଉଠିଯାଇଛି । ଗାଈଆଳ ଟୋକାଟେ ବାଙ୍କରେ ବସି ଡାଳଟାକୁ ଉଠାଉଛି ଓ ପକାଉଛି । ଦୋଳି ଖେଳୁଛି, ଏଣେ ରାଗିଣୀ ଛାଡ଼ିଛି- "ସର୍ଗେ ଡାଳ ମର୍ଥେ ଡାଳ" । ଛୋଟ ମୁଣ୍ଡ-ଚାନ୍ଦିଆ ବାଛୁରିଟା ଡାଳର ଆଗ ପତର ଖାଇବା ପାଇଁ ମୁହଁ ବଢ଼ାଉଛି । ଡାଳ ତା ମୁହଁରେ ବାଜୁଛି ପୁଣି ଉଠିଯାଉଛି । ଗାଈଆଳ ଟୋକାଟା ଜୋରରେ ଦୋଳି ଖେଳି ଖେଳି ସୁର ବେଶୀ ବେଶୀ ଟେକି ଦେଉଛି । ପଦ୍ମନାଭ ହସି ହସି ଆଖି ଫେରାଇଲା । ବରଗଛରୁ କେତେଟା ଓହଳ ନୂଆ ହେଇ ଲମ୍ବି ଆସିଛି । ଓହଳର ଅଗରେ କଞ୍ଚା ସୁନା ରଙ୍ଗର ସରୁ ସରୁ ଚେର ସବୁ ଛବୁଡ଼ି ଆସିଛି । ଛୋଟ ଘରଚଟିଆ ଦୁଇଟା ଗୋଡ଼ାଗୋଡ଼ି ଲାଗିଛନ୍ତି । ଗୋଟାଏ ଓହଳରୁ ଆର ଓହଳକୁ ଆଗପଛ ହେଇ ଝାମ୍ପ ମାରୁଛନ୍ତି । ଆଃ, କି ଲୀଳାଖେଳା ଲାଗିଛି । ଗର୍ବରେ ପଦ୍ମନାଭର ମନ ଭାରୀ ହେଇ ଉଠିଲା ।

ବେଦୀ ଉପରୁ ଗୋଟା ଗୋଟା ଆଉ ପଡ଼ି ଛେଚିହୋଇ ଯାଇଥିବା ଫଳ ସବୁ ଗୋଟାଇ ସେ ଗୋଟେ ଜାଗାରେ କୁଢ଼ାଇଲା । ପାକଲା ଫଳଟେ ନେଇ ସେ ପାଟିରେ ପୁରାଇଲା । ଦାନ୍ତରେ ଚାପି କାଢ଼ି ପକାଇଲା । ପୁଣି କଣ ଭାବି ପାଟିରେ ଟିକିଏ ଶସ ପୁରାଇ

ଚାଖିଲା । ମନ୍ଦତ ନୁହେଁ । ଫଳଗୁଡ଼ାକ ଆଞ୍ଜୁଳା ଆଞ୍ଜୁଳା କରି ଆଣି ଶୋଇ ଛାତି ଉପରେ ରଖିଲା । ଆଖି ବୁଜି ଛାତି ଉପରେ ଫଳଗୁଡ଼ାକ ଉପରେ ଆସ୍ତେ ଆସ୍ତେ ହାତ ବୁଲାଇଲା । ଛାତି ଭିତରେ ତାର ଥଣ୍ଡା ଶିରିଶିରି ପବନ ଖେଳି ଯାଉଥାଏ । ସେ ଆଖି ବୁଜି ଭାବିଲା । ବହୁତ ଦିନ ହେଲାଣି-ହଁ, ପାଖାପାଖି ତିରିଶ ବର୍ଷ ହେବ। ଏଭଳି ଗୋଟାଏ ନିର୍ଦ୍ଧୁମ ଖରାବେଳେ ସେ ହାଟ ସୌଦା ସାରି ଫେରୁଥାଏ । ଗାଁ ମୁଣ୍ଡରେ ପହଞ୍ଚିଛି ତ କିଳିକିଳା ପାଟି ଶୁଭିଲା । ମାରଣା ଷଣ୍ଢଟା ଧାଉଁଛି । ଚନ୍ଦ୍ରଶେଖରବାବୁଙ୍କ ସାନ ପୁଅ ଟୁନୁବାବୁ ରାସ୍ତାରେ ଖେଳୁଛି । ଷଣ୍ଢଟା ଧାଇଁ ଆସିଲା । ଚାରିଆଡୁ ପାଟି କମ୍ପି ଉଠିଲା । ଶେଷକୁ ଚନ୍ଦ୍ରଶେଖର ବାବୁ ଦୌଡ଼ି ଆସି ପୁଅକୁ ଟେକି ନେଲେ । ଛୁଆକୁ ନେଇ ଚୁମା ଦେଇ ସେ ବ୍ୟସ୍ତ ହୋଇ ଉଠିଲେ । ଆଖିରୁ ତାଙ୍କର ପାଣି ଗଡ଼ି ଆସିଲା । ଷଣ୍ଢଟା ରାସ୍ତାରେ ଅଛି ବୋଲି ପଦ୍ମନାଭ ପାଖ ବାରଣ୍ଡାକୁ ଉଠିଯାଇଥାଏ । ରାଗରେ ଷଣ୍ଢଟା ନଇଁଯୋଡ଼ିରେ ଯାଇ ଶିଙ୍ଘ ପୁରାଇ ମାଟି ଖୋଳିଲା । ଶୂଳା ଶୂଳା ମାଟି ଶିଙ୍ଘରେ ତାଡ଼ି ରାଗରେ ଛାଟି ଦେଉଥାଏ । ମୁଣ୍ଡାଏ ମାଟି ସାଙ୍ଗରେ ଛୋଟ ବରଗଛଟେ ଛାଟି ହୋଇ ପଡ଼ିଲା । ଷଣ୍ଢଟା ମାଡ଼ି ଆସି ପତର ଦିଟା ରାଗରେ ଚାକୁଳାଇ ଦେଇ ଗଛଟାକୁ ମାଡ଼ି ଦଉଡ଼ି ପଳାଇଲା । ପଦ୍ମନାଭ ଫେରିଲା । କୂଅରୁ ପାଣି ଲୋଟେ ଆଣି ଗୋଡ଼ ଧୋଇ ସେ ନିଶ୍ୱାସ ମାରିଲା । କି ଖରା, ଜଳନ୍ତା ନିଆଁ । ଦୁନିଆକୁ ପୋଡ଼ି ପକାଇବ । ଆଃ, ଆଜି କେଡ଼େ କାଣ୍ଡଟା ସତେ ଘଟି ନଥାନ୍ତା । ଚନ୍ଦ୍ରଶେଖରବାବୁଙ୍କ ପୁଅ ପାଖକୁ ଷଣ୍ଢଟା କି ରାଗରେ ସତେ ଧାଇଁ ଆସିଥିଲା । କେଡ଼େ ସୁନ୍ଦର ପୁଅଟା କଣ ସତେ ହେଇଥାନ୍ତା ? ଚନ୍ଦ୍ରଶେଖରବାବୁଙ୍କ ବଡ଼ପୁଅ କାଳେ ଦିପଟି ହେଇଛି । ସାନକୁ ଚନ୍ଦ୍ରଶେଖରବାବୁ କେଡ଼େ ଯତ୍ନରେ ପାଳନ୍ତି । କେତେଥର ସେ ଶୁଣିଛି, ଚନ୍ଦ୍ରଶେଖରବାବୁ କହନ୍ତି, ସାନପୁଅ ତାଙ୍କର ଖୁବ୍ ଜଣେ ବଡ଼ ମଣିଷ ହେବ । ବଡ଼ପୁଅ ୟା ପାସଙ୍ଗରେ ପଡ଼ିବନି । ପଦ୍ମନାଭର କେହି ନାହିଁ । ବିବାହ ଆଜି ପର୍ଯ୍ୟନ୍ତ ଯୁଟିଲା ନାହିଁ । ଯୁଟିବ ନାହିଁ ବି । ବାଁ ଗୋଡ଼ଟା କେମ୍ପା, କଳା କିଟିକିଟି ଦେହ, କିଏ ସତେ ତାକୁ ବାହା ହେବ ? ଛାଡ଼, ପଦ୍ମନାଭ ବଢ଼ିଲା ଦାଢ଼ି ଭିତରେ ଆଙ୍ଗୁଳି ଗଳାଇ କୁଣ୍ଡେଇଲା । ଦାଢ଼ି ଗୁଡ଼ାକ ଝିଣିଝିଣି କରି ଉଠୁଛି । ମୁଣ୍ଡର ବାଳ ଗୁଡ଼ାକ ଜୋରରେ ଟାଣି ଦେଲା । ଦିଟା ବାଳ ଛିଡ଼ି ଆସିଲା । ଏକଦମ୍ ଧଳା । ହଁ ସେ ଆଜି ଦର୍ପଣରେ ଗାଧୋଇ ସାରି ଚିତା ନାଇଲାବେଳେ ଦେଖିଛ, ମୁଣ୍ଡରେ ଗୋଟାଏ ବୋଲି କଳା ବାଳ ନାହିଁ । ସେ ବୁଢ଼ା ହେଇଗଲାଣି । ହଁ, ଏକବାରେକେ ବୁଢ଼ା ହେଇଗଲାଣି । ହବାର କଥା । ଏ ଗଛ ଲଗାଇଲାବେଳେ ତାରତ ବାହା ହେବା ବୟସ ଢେର ଗଡ଼ି ଯାଇଥିଲା । ସେ ତ କେତେଦିନ ତଳର କଥା । ହୁ, ସେଇଦିନ ଖରାବେଳେ ଚନ୍ଦ୍ରଶେଖର ବାବୁଙ୍କ ପୁଅକୁ ଯେଉଁଦିନ ଷଣ୍ଢ ମାରିବାକୁ ଯାଉଥିଲା, ସେ ଘରକୁ ଆସି ଗୋଡ଼ ଧୋଇ ଦିହରୁ ଝାଳ ମାରୁଛି । ତା ମନ କଣ ହେଇଗଲା । ସେ ମୁରୁଖ ଲୋକ । ପାଠଶାଠ ଜାଣେନି । ଚନ୍ଦ୍ରଶେଖରବାବୁ ପୁଅକୁ ଷଣ୍ଢ ଆଗରୁ ଟେକି ନେଇଗଲେ । ତାଙ୍କ ଗେହ୍ଲାପୁଅ । ସେ କାନ୍ଦି ପକାଇଲେ । ପୁଅ ତାର ଖୁବ୍ ବଡ଼ ଲୋକ ହେବ । ଦିପଟିଠୁଁ ବି ଆହୁରି ଦଡ଼ ମଣିଷ । ଛୋଟ ବରଗଛଟାକୁ

ଷଣ୍ଢ ମାଡ଼ି ଚକଟି ଦେଇ ଗଲା । କି ସୁନ୍ଦର କଅଁଳ ପତର ଦିଟା ତାର ଭୀମ ଭଳି ଥୋମଣିରେ ଛିଣ୍ଡେଇ ନେଇଗଲା ସତେ । କେଡ଼େ ବଳଟେ ଗଛ... ହଁ, ସେତ ଠାକୁରାଣୀ ବରଗଛ ଦେଖିଛି କେତେବଡ଼,- ଏକରେ ଜମି ମାଡ଼ି ବସିଛି । ଏ ଛୋଟ ଗଛଟା ଥିଲେ କଣ ବଡ଼ ହେଇ ନଥାନ୍ତା । କେତେ ଜନ୍ତୁ ଆସି ଆଶ୍ରା ନିଅନ୍ତେ । ହଅ, ସେ ଯାଇଁ ପଖାଳ ଗଣ୍ଡେ ଖାଇ ଘରେ ସେଦିନ ଶୋଇଲା । ଖରାଟାରେ ଧାଇଁ ଧାଇଁ ଆସିଛି । ଛାଇ ନିଦ ମାଡ଼ି ଆସିଲା । ସେ ସପନ ଦେଖିଲା ସେ ବାହା ହେଇଛି । କେଡ଼େ ସୁନ୍ଦର ଗୋରା ଡକଡକ ବୋହୂଟିଏ । ଘରଦ୍ୱାର ପୂରି ଉଠୁଛି...ହଁ, ଝିଅଟିଏ ହେଇଛି-ଅବିକଳ ମା ଭଳି-କି ସୁନ୍ଦର । ସୂର୍ଯ୍ୟଙ୍କୁ ଚାହିଁ ହେବ ତାକୁ ଚାହିଁ ହେବନି ।

......ଆରେ ରେ ରେ ଝିଅ ଦାଣ୍ଡରେ ଖେଳୁଛି-ମାରଣା ଷଣ୍ଢଟା ଧାଇଁ ଆସୁଛି । ସେ ଦୌଡ଼ିଗଲା । ଝିଅକୁ ଟେକି ଆଣିଲା । ତା ଆଖିରୁ ଲୁହ ଗଡ଼ି ଆସୁଛି । ସେ ଝିଅକୁ ଚୁମା ଖାଇବ ବୋଲି ମୁହଁ ପାଖକୁ ଟେକି ଆଣିଲା । ଝିଅ ନୁହେଁ... ବରଗଛ- ସେହି ଷଣ୍ଢ ଉପୁଡ଼ା ଛୋଟ ବରଗଛ । ତା ନିଦ ଚାଉଁକରି ଭାଙ୍ଗିଗଲା । ସେ ଦେଖିଲା ତା ଆଖିରୁ ସତେ ଲୁହ ବୋହି ଆସୁଛି । ଉଠି ସେ ଚାଲିଗଲା । ରାସ୍ତା କଡ଼ରେ ବରଗଛଟି ପଡ଼ିଛି । ଅଗରେ ଗୋଟିଏ ବୋଲି ପତ୍ର ଅଛି । ସେ ବି ଖରା ଧାସରେ ଝାଉଁଳି ଗଲାଣି । ସେ ତାକୁ ନେଇ ଆସିଲା । ବାଡ଼ିରୁ ଫଟା ହାଣ୍ଡିଟେ ଖୋଜି ପାଇଲା ନାହିଁ । ଶେଷକୁ ଯେଉଁ ହାଣ୍ଡିରେ ମୁଗ ପୂରାଇ ରଖିଥିଲା, ତଳେ ମୁଗ ଢାଳି ସେ ହାଣ୍ଡିଟା ଆଣିଲା । ମାଟି ଗୁଣ୍ଡ କରି ଯତ୍ନକରି ହାଣ୍ଡିରେ ପୁରେଇଲା । ଆରେ ପାଣି ଜମିଯିବ, ତାର ମନେ ନାହିଁତ । ସେ ମାଟି ପୁଣି ହାଣ୍ଡିରୁ କାଢ଼ିଲା । ହାଣ୍ଡିତଳେ କଣାକରି ପୁଣି ମାଟି ପୁରାଇ ଯତ୍ନରେ ଗଛଟି ଲଗାଇଲା । ଗଛ ମୂଳରେ ପହିଲୁ ଯେଉଁ ମାଟି ଟିକକ ଲାଗିଥିଲା ତାକୁ ଭଲ କରି ସଜାଡ଼ି ଚେର ଦେହରେ ଚାପିଦେଲା । ଜନମ ମାଟି ଖସିଗଲେ ଆଉ କି ଗଛ ବଞ୍ଚିବ ? ପାଣି ମନ୍ଦେ ଆଣି ହାଣ୍ଡିରେ ଦେଲା । ପିଣ୍ଡା ଉପରେ ଛାଇରେ ହାଣ୍ଡିଟା ରଖି ଗଛଟିକୁ ଭଲକରି ଦେଖିଲା । ଦାଣ୍ଡକୁ ଯାଉଥିଲା ପୁଣି ଫେରି ଆସିଲା । ଗଛ ପାଖରେ ପୁଣି ଦଣ୍ଡେ ବସିଗଲା । ସତେ କଣ ଗଛଟା ବଞ୍ଚିବ ? ସେ ଆଗରୁ ନେଇ ଆସିଲାନି କାହିଁକି ? ଦମେ ହାଇପି ସାଇପି ହେଇ ସେ ଦାଣ୍ଡକୁ ଗଲା ।

ପଦ୍ମନାଭ ଗଛମୂଳ ପିଣ୍ଡି ଉପରେ ଶୋଇ ଶୋଇ ଭାବି ଚାଲିଲା । ପ୍ରତିଦିନ ସେ ହାଣ୍ଡିରେ ଲାଗିଥିବା ଗଛ ମୂଳରେ ପାଣି ଢାଳିଛି । ଗଛଟାକୁ ଧରି ସେଦିନ ତା ଆଡ଼ରୁ ବଙ୍କେଇ ଦେଖୁ ଦେଖୁ ଦେଖୁ ହଠାତ୍ ଛାଡ଼ି ହେଇଗଲା । ଗଛଟା ଜୋରରେ ହଲିଗଲା । ଅଗରେ ଗୋଟିଏ ବୋଲି ପତର ଥିଲା । ସେବି ପାକଲିଆ ପଡ଼ି ଆସିଥିଲା । ଝଡ଼ି ପଡ଼ିଲା । ହଠାତ୍ ପବନ ଆସି ପତ୍ରଟାକୁ ଉଡ଼େଇ ନେଇଗଲା । ତା ହାତ ଥରି ଉଠିଲା । ସେ ଜାଣି ଶୁଣି ଗଛଟାକୁ ମାରିଦେଲା ବୋଧହୁଏ । ମୂଳଟା ହଲିଗଲା, ଆଉ କଣ ବଞ୍ଚିବ ? ସେ ଉଠି ଯାଇ ଅଧ ଲୋଟେ ପାଣି ଆଣି ପୁଣି ମୂଳରେ ଢାଳିଦେଲା । ତା ମନଟା କାହିଁକି କିମିତିକା କିମିତିକା ହେଇଗଲା । ଗଛଟା ରାସ୍ତା କଡ଼ରେ ପଡ଼ି ମରିଥିଲେ ମରିଥାନ୍ତା । ସେ କାହିଁକି

ଆଣିଲା ? ଆଣି ବଞ୍ଚେଇବ କଣ ନିଜ ହାତରେ ମାରିଦେଲା । ତାପରେ ପ୍ରତିଦିନ ସେ ଘରକୁ ଆସିଲାତ ଖୁଣ୍ଟା ଛୋଟ ଗଛଟିକୁ ସେ ପ୍ରଥମେ ଦେଖେ । ଦ୍ୱିତୀୟ ଦିନ ଅଗ ଆଡ଼ଟା କାହିଁକି ଟିକିଏ ମାଟିଆ ଦିଶିଲା । ସେ ଆଙ୍ଗୁଳିରେ ଚିପି ପକାଇଲା । ଯାଃ, ବୋଧହୁଏ ଶୁଖି ଆସିଲାଣି । ଆଉ ବଞ୍ଚିବନି । ସେ ଘରୁ ସେଦିନ ଚାଲିଗଲା । ଗଲାବେଳେ ଠାକୁରାଣୀ ଗଛ ବାଟ ଦେଇ ଗଲା । କେଡ଼େ ବଡ଼ ଗଛ । ମୁଣ୍ଡ ଟେକି ଚାହିଁଲେ ମୁଣ୍ଡରୁ ଠେକା ଖସିପଡ଼ିବ । ସେ ଛୋଟ ଗଛଟା ଆଣି ଲଗାଇ ଥିଲେ । ସେ କଣ ବଡ଼ ହେଇ ନଥାନ୍ତା ? ଏଇମିତି ଠାକୁରାଣୀ ଗଛ ଭଳି ଚକଡ଼ା ମାଡ଼ି ବଢ଼ିଥାନ୍ତା– ଗଛଯାକ ଚଢ଼େଇ ଖୁନ୍ଦି ହେଇଥାନ୍ତେ– ପେନ୍ଥା ପେନ୍ଥା ଫଳ ସବୁ ଡାଳରେ ଲେସି ହେଇ ଯାଇଥାନ୍ତା... ଛାଡ଼– ନ ହେଲା ନାହିଁ । ସେ ଆଗକୁ ଚାଲିଲା । ଚନ୍ଦ୍ରଶେଖରବାବୁଙ୍କ ପୁଅ ଦିପଟିଠୁଁ ବଡ଼ ହେବ– ବାପ ତାର କ୍ଷଣେ ଆଗରୁ ଟେକି ନେଇଗଲା । ସ୍ନେ କ୍ଷଣେ ଆଗରୁ ଗଛଟାକୁ ଆଣିଲା ଯେ ମାରିଦେଲା । ଛାତି ଭିତରଟା ତାର ଗିଣିଗିଣେଇ ଉଠିଲା । ସେ ଆଖି ବୁଜି ନାକ ପୁଡ଼ା ଫୁଲେଇ ମୁଣ୍ଡ ହଲେଇଲା– ମୁଣ୍ଡ ଭିତରେ କଣ ଗୁଡ଼େ ଚରିଯାଉଛି । ସେ ଘରକୁ ଫେରିଲା ।

ତାପରେ ଗଛ ଗଜରି ଉଠିଲା । ଗୋଟିକ ପରେ ଗୋଟିଏ ପତର ତଳୁ ଉପରକୁ ଆସ୍ତେ ଆସ୍ତେ ଫୁଟି ଉଠିଲା । ପ୍ରତି ନୂଆ ପତରକୁ ସେ ହାତରେ ଆଉଁଷି ଦେଖେ, କେଡ଼େ ପାଲିସ୍–ଛନ ଛନ ହେଉଥାଏ ! ହାତ ମାଇଲେ ପଛ ଆଡ଼କୁ ବାଙ୍କିଯାଏ । ସେ ଦାଣ୍ଡ କବାଟ କିଳିଦେଇ ଆସି ନଇଁପଡ଼ି ଗାଲରେ ପତରକୁ ଟେକି ଆସ୍ତେ ଘଷିଦିଏ । କେଡ଼େ ଥଣ୍ଡା । ତାର ବହଳ ରୁଢ଼ ପାର ହୋଇ ଗାଲ ଭିତରେ ସେ ଥଣ୍ଡା ଶିର ଶିର ହେଇ ଚରିଯାଏ । ଦେହ ତାର ଶୀତେଇ ଉଠେ । ସେ କନକନ ହେଇ ଏପାଖ ସେପାଖ ଚାହିଁ ପତର ଉପରେ ଚୁମା ଦେଇ ଛେପ ଲଗେଇ ଦିଏ ।

ସେଦିନ ରାମ ପୁରୋହିତେ ଘରକୁ ଆସିଥିଲେ । ପଦ୍ମନାଭର ବାପାଙ୍କ ପିଣ୍ଡ ପକାଇବା ଦିନ ପୁରୋହିତେ ବର୍ଷରେ ଥରେ ଆସନ୍ତି । ବର୍ଷକର ଗୋଟେ ଦିନ ପିତୃପୁରୁଷ ଟିକିଏ ପାଣି ପାଆନ୍ତି । ବଂଶରେ କେହି ଥିଲେ ବ୍ରାହ୍ମଣ ହାତରେ ଚାଉଳ ମୁଠେ ଟେକିଦିଏ । ପିଣ୍ଡ ପକାଇ ସାରି ସେ ପୁରୋହିତଙ୍କୁ ବାରଣ୍ଡାରେ ଖାଇବାକୁ ଦେଲା । ଆଜି ବାପା ତାର ସ୍ୱର୍ଗରେ ଶାନ୍ତିରେ ନିଃଶ୍ୱାସ ମାରିବେ । ମନ ଭିତରଟା ତାର ଉଦାସ ହେଇଉଠିଲା । ତାର ତ ଫେର କାଳ ଆସିବ । ତା ପାଇଁ ତ କେହି ନାହିଁ ଚାଉଳ ଗଣ୍ଡେ ଟେକି ଦେବ । ପୁରୋହିତେ ଖାଉଁ ଖାଉଁ ଗଛଟିକୁ ଦେଖି କହିଲେ– "ଆରେ ପଦ୍ମନାଭ, ବରଗଛଟିତ ବେଶ୍ ବୃଷାଳ ହେଇଛି । ଖାଲି ବରଗଛଟିଏ କାହିଁକି ରଖିଛୁ । ଅଶ୍ୱସ୍ତ ବୃକ୍ଷଟିଏ ଆଣି ଲଗା । ବିବାହ କରିଦେବୁ । ଅପୁତ୍ରିକ ଦୋଷ କଟିଯିବରେ ।" ସେଦିନ ସେ ପ୍ରଥମେ ଏ କଥା ଶୁଣିଲା । ମନଟା ତାର ଉଶ୍ୱାସ ହେଇ ଆସିଲା । ସେ ଯେମିତି ବଡ଼ ଭରସାଟେ ପାଇଲା । ପଚାରିଲା– "ଗୋସେଇଁ ଆପଣେ ଇମିତି କଣ ହୁଏ ?" ପୁରୋହିତେ ଅଣ୍ଟାରେ ଦକ୍ଷିଣା ଗୁଞ୍ଜି ଉଠୁ ଉଠୁ

କହିଲେ-"ତୁ ଆଗେ ଅଶ୍ୱସ୍ତ ଗଛ ଆଣି ଲଗା । ବୃକ୍ଷ ସ୍ଥାପନା ହେଇଯାଉ- ଆମେ ସବୁ ବ୍ୟବସ୍ଥା କରିଦେବା ।"

ତାପରେ ସେ ଓସ୍ତଗଛ ପାଇଁ ବହୁତ ଆଡ଼େ ନଜର ପକାଇଛି । ଗାଁ ମୁଣ୍ଡ ପୋଲ ବୁଚ୍ଛିଆ ଭିତରେ ଓସ୍ତ ଗଛଟେ ଥିଲା ଯେ ଖୁବ୍ ଉଚ୍ଚ ହୋଇ ଯାଇଥିଲା । ବରଗଛଠୁ ବଡ଼ । ସେଠୁ ସେ ମନମାରି ଦେଇ ଆସିଲା । ଆଉ ଶେଷକୁ ନ ମିଳିଲାବେଳକୁ ଦେଖିବା । ଯିବା ଆସିବା ବେଳେ ନଇଁଯୋଡ଼ି ଭିତରେ ନଜର ଦେଇ ଦେଇ ସେ ଯାଇଛି । ଗାଈଆଳ ଟୋକାଙ୍କୁ ଗାଈ ନେଲାବେଳେ, ଶାଗ ତୋଳି ଗଲାବେଳେ ପାଲୁଣୀକୁ କେତେଥର ପଚାରିଛି । ଶେଷକୁ ମହାଦେବ ମନ୍ଦିର ପଛପଟ ଗାଧୁଆପାଣି ରହିବା କୁଣ୍ଡ କଡ଼ରେ ସେ ଛୋଟ ଓସ୍ତ ଗଛଟିଏ ଦେଖିଲା । ତାକୁ ଯତ୍ନରେ ଚାରିଆଡୁ ଖୋଳି ତା ମୂଳରେ ମାଟି ପୁଳେ ଲଗାଇ ଘରକୁ ଆସିଲା । ଆଣିଲାବେଳେ ମନେ ମନେ ଠିକ୍ କରିଛି ଗଛଟା ଠିକ୍ ବରଗଛ ଉଞ୍ଚ ହେବ । ଘରେ ପହଞ୍ଚି ବରଗଛ ସହିତ ଆଗେ କଛି ନେଲା । ଓସ୍ତ ଟିକିଏ ଉଞ୍ଚ ହେଲା । ହଁ, ମାଟିରେ ପୋତିଦେଲେ ସମାନ ହେଇଯିବ । ବରଗଛକୁ ଲଗାଇ ଆଉ ଗୋଟିଏ ହାଣ୍ଡିରେ ସେ ଓସ୍ତ ଗଛକୁ ରଖିଲା । ତାପରେ ଏହି ଦୁଇଟି ଗଛ ନେଇ ତା ଜୀବନର ଅଧିକାଂଶ ସମୟ କଟାଇ ଆସିଛି, ତାର ଛୁଆପିଲା ନାହିଁ । ଏ ଦୁଇଟିଙ୍କୁ ବିବାହ କରି ଦେଲେ ଅପୁତ୍ରିକ ଦୋଷ କଟିଯିବ । ଗଛ ଦୁଇଟିଙ୍କୁ ନିଜର ଛୁଆଭଳି ପାଳି ଆସିଛି । ଆପଣାର ଦୁଃଖ ସୁଖ ତାଙ୍କରି ପାଖରେ ଗୁଣୁଗୁଣୁ ହେଇ କହିଛି । ତାଙ୍କଠୁଁ କିଛି ଉତ୍ତର ପାଇନି ସତ; କିନ୍ତୁ ତାଙ୍କ କତିରେ ନିଜର କଥା କହିଦେଲେ ମନ ତାର ଉଶ୍ୱାସ ହୋଇ ଯାଉଥିଲା । ଗଛ କାଳେ ଶୁଖିଯିବ, ସେଥିଲାଗି ବ୍ରାହ୍ମଣ ଘରେ ଖୁସାମତି କରି ଠାକୁର ଗାଧୁଆ ପାଧୁଆ ପାଣି ଆଣି ମୂଳରେ ଢାଳିଛି । ବାବା ଆଖଣ୍ଡଳମଣିଙ୍କ ଧଣ୍ଡା ଆଣି ଗଛରେ ଗୁଡ଼େଇ ଦେଇଛି । କେତେବେଳେ କେଉଁ କଥା । ସେଦିନ ଆସି ଶରଧାବୋଉ କଥା କହୁଁ କହୁଁ ଗଛଟାରୁ ପତରଟେ ଛିଣ୍ଡେଇ ପକାଇଲା । ସେ ବୁଝିଲା ଯେ ସେଦିନ ତାର ମାସିକିଆରୀ ହୋଇଥିଲା । ଆଉ ଶରଧାବୋଉ ଯାଏ କୁଆଡ଼େ ? ଅଛୁଆଁ ମଣିଷ ହେଇ ଗଛ ଛୁଇଁଦେଲା । ଆଉ କଣ ଗଛ ବଞ୍ଚିବ ? ସେ ଶରଧା ବୋଉକୁ ମାରେ କି ନମାରେ । ପୁରୋହିତ ଗୋସେଇଁ ଘରୁ ମନ୍ତରା ପାଣି ଆଣି ଗଛ ଉପରେ ଛିଞ୍ଚିଲା । ମନଟା ତାର କେତେ ଗୁଡୁପୁଡୁ ହେଲା । ସେ କାମରୁ ଫେରି ଆଗେ ଗଛ ପାଖରେ ଦଣ୍ଡେ ବସିଯାଏ । ପବନରେ ଦୋହଲି ଦୋହଲି ଛୋଟ ଗଛ ଦୁଇଟା ପିଟି ହୋଇ ଯାଆନ୍ତି । ସେ ଚାହିଁ ଚାହିଁ ହସି ପକାଏ । ସେଥର ପୂନେଇ ବାସିଦିନ ବଡ଼ ଧୂମ ତୋଫାନଟେ ହେଲା, ସେ ବରଗଛଟା ବାଙ୍କି ଯାଇଁ ଓସ୍ତ ଗଛ ଉପରେ ଅଟକି ଯାଇଥାଏ । ସେ ଘରେ ନଥିଲା । ଆସି ଦେଖିଲା । ଯାହାହେଉ ଦୁଇଟା ଯାକ ଧରାଧରି ହୋଇ ତୋଫାନର ତୋଡ଼ଟାକୁ ପାର କରିଦେଲେ । ନହେଲେ ବରଗଛଟା ତଳେ ପଡ଼ି ଭାଙ୍ଗି ଯାଇଥାଆନ୍ତା । ସେ ବରଗଛକୁ ଠିଆ କରି ପାଖରେ ବାଉଁଶ ପୋତି ସିଧା କରିଦେଲା । ଓସ୍ତଗଛକୁ ଟିକିଏ ଆଉଁସିଦେଇ ରାନ୍ଧିବାକୁ ଗଲା । ଗଛମୂଳରେ ହାଣ୍ଡିରେ ଘାସ ଗଛଟେ ଉଠିଲା ତ ସେ ତାକୁ ଓପାଡ଼ି ପକାଏ ।

ସଞ୍ଜବେଳେ ସେ ଗାଁରୁ ଫେରେ । ଦାଣ୍ଡରେ ଛୁଆଏ ଚକାଭଉଁରୀ ଖେଳୁଥାନ୍ତି । ପିଣ୍ଡା ଉପରେ ସଞ୍ଜ ଦେଉଁ ଦେଉଁ ମାଆମାନେ ଛୁଆଙ୍କ ଖେଳ ଦେଖି ଅଟକି ଯାଇଥାନ୍ତି । ସେ ଘରେ ଆସି ଦେଖେ, ସଞ୍ଜବେଳିଆ ସୁଲୁସୁଲୁ ପବନରେ ଗଛ ଦୁଇଟି ଦୋହଲୁଛନ୍ତି, ତା ଛୁଆଙ୍କ ଖେଳ ଭଳି ତାକୁ ଲାଗେ । ସେ ଦଣ୍ଡେ ବସି ଗଛ ଦୁଇଟିକୁ ଅନାଇଁ ରହେ । ଏକାଦଶୀ ବାସିଠୁଁ ତାକୁ ସେଦିନ ଜର ହେଲା । ବାତ ଜର । ତିନିଦିନ ଥାନଜ୍ଞାନ ରହେନି । ଗଛରେ ଲୋଟେ ପାଣି ନଦେଲେ ନ ଚଳେ । ତା ଦେହ ସୁଖ ନାହିଁ ବୋଲି ଛୁଆ ଦୁଇଟା ଓପାସ ଶୋଇବେ ? ସେ ବସି ବସି ପାଣି ମାଠିଆ କୂଅରୁ କଷ୍ଟରେ କାଢିଲା । ଦୁଇଗଛ ମୂଳରେ ଢାଳିଦେଇ ଥକାମାରି ବସି ପଡ଼ିଲା । ଗୋଡ଼ ଏଣେ ବିନ୍ଧି ଫାଟି ପଡୁଛି । ପାଣି ଗଛ ମୂଳରେ ଭୁତୁଭୁତୁ ହୋଇ ଭିତରକୁ ଚାଲିଗଲା । ସେ ନିଜ ଗୋଡ଼ ଚିପୁ ଚିପୁ ଗଛ ମୂଳକୁ ଚାହିଁ ବସି ରହିଲା ।

ନାହାକ ପାଖରୁ ସମୟ ବୁଝି ଆସି ଅକ୍ଷିତୃତୀୟା ଦିନ ସେ ଗଛ ଲଗାଇବ ବୋଲି ଠିକ୍ କଲା । ଗଛ ଦୁଇଟା ବଡ଼ ହୋଇଗଲାଣି । ଆଉ ହାଣ୍ଡିରେ ଏଣିକି ରଖି ହେବନି । ଚେର ହାଣ୍ଡି ଫଟାଇ ଦେବ । କେଉଁଠି ଗଛ ଲଗାଇବ ବୋଲି ଗାଁରେ ଜଣ ଜଣ କରି ପଚାରିଲା । ପୋଲ ମୁଣ୍ଡ ପାଖରୁ କିଛି ବାଟ ଗଲେ ଦୋଛକି ରାସ୍ତା । କଡ଼ରେ ଗଡ଼ିଆଟିଏ ବି ଅଛି । ପାଖରେ ଗଛ ବୃଛ ନାହିଁ । ହାଟକୁ ରାସ୍ତା- କାରବାରି ଜାଗା । ଗଛଟା ସେଇଠି ଲଗେଇଲେ ଅବଶ୍ୟ ପାଞ୍ଚଜଣ ତା ମୂଳରେ ଆଶ୍ରା ନେବେ । ସେଇଠି ଗଛ ଲଗାଇବ ବୋଲି ଠିକ୍ କଲା । ପନ୍ଦର ଦିନ ଆଗରୁ ବଡ଼ ବଡ଼ ଗାତ ଦୁଇଟା ଖୋଳି କୁଟା ପୂରାଇ ଭିତରଟା ପୋଡ଼ି ଦେଲା । ଅକ୍ଷିତୃତୀୟା ଦିନ ଶୁଭବେଳା ଦେଖି ଗଛ ଲଗାଇଲା । ସେଦିନ ସେ ସକାଳୁ ଗାଧୋଇ ଉପାସ ଥାଏ । ଗଛ ଲଗାଇ ସାରି ଜଣେ ବ୍ରାହ୍ମଣ ଡକାଇ ଖାଇବାକୁ ଦେଲା । ଦକ୍ଷିଣା ଦେଇ ସାରି ବ୍ରାହ୍ମଣ ଗୋଡ଼ରୁ ଟିକେ ଧୂଳି ଆଣିଲା । ଧୂଳି ଟିକକ ନେଇ ଗଛ ଉପରେ ଛିଞ୍ଚି ଦେଇ ଆସିଲା । ଏଣିକି ଦିନରେ ଥରେ ହେଉ ଦି ଥର ହେଉ ସେ ସେଠିକି ଯାଏ । ଗଡ଼ିଆରୁ ପାଣି ଆଣି ଗଛ ମୂଳରେ ଢାଳେ । ଅନ୍ୟ ଗାଁରେ କାମ ପଡ଼ିଲେ ବୁଲାଣି ରାସ୍ତା ହେଲେ ସୁଦ୍ଧା, ସେ ସେଇ ବାଟ ଦେଇ ଯାଏ । ବାଟଚଲା ଲୋକ ଗଛକୁ ଦେଖି କୁହାକୁହି ହୁହନ୍ତି- "ଯାହା ହେଉ ବାଟ ଜାଗାଟିରେ କିଏ ଗଛ ଦୁଇଟି ଲଗାଇଛି । ଭଲ ବାଗିଆ ଗଛ ଯୋଡ଼ିଏ ଏକା ।" ସେ ସେହି ଲୋକଙ୍କ ପଛେ ପଛେ ଚାଲେ । କିଛି କାମ ନଥାଏ । କଣ ଆଉ ଗଛ ବିଷୟରେ କହିବେ କି ? ଗର୍ବରେ ତା ଛାତି ଫୁଲି ଉଠେ । ମିଛରେ ମିଛରେ ସେମାନଙ୍କ ସାଙ୍ଗରେ କଥାବାର୍ତ୍ତା ଆରମ୍ଭ କରି କଥାଛଳରେ ତାରି ଗଛ ବୋଲି ସେ କହିପକାଏ । ସେମାନେ ତାକୁ ପ୍ରଶଂସା କରନ୍ତି । ଅଣ୍ଟାରୁ କରାଟ କାଢ଼ି ଗୁଣ୍ଡି ଟିପେ ଟିପେ ସେମାନଙ୍କୁ ଦେଇ ସେ ଗଛମୂଳକୁ ଫେରିଆସେ ।

ବିଶାଳ ଘର ମାରଣା ଷଣ୍ଢଟା ବାଡ଼ ଭାଙ୍ଗି ବରଗଛଟା ଖାଇଗଲା । ସରୁ ସରୁ କେନାଗୁଡ଼ିକ ସବୁ ଭାଙ୍ଗି ପକାଇ ଥାଏ । ଗାଈଆଳ ଟୋକାଟେ ଧାଇଁ ଆସି ଖବର ଦେଲା ।

ସେ ଖାଇ ବସିଥାଏ । ଭାତ ଗୁଣ୍ଡା ତାର ହାତରୁ ଖସି ପଡ଼ିଲା ସେ ଧାଇଁଲା । ଷଣ୍ଢଟାକୁ ସେଦିନ ମାରି ପକାଇ ଥାଆନ୍ତା । ଷଣ୍ଢଟା ତାକୁ ଦେଖି ଧାଇଁଲା । ଠେଙ୍ଗାଟା ଧରି ସେ ଗୋଡ଼ାଇଲା । ତାର  ବୁଦ୍ଧି ବୃତ୍ତି ହଜି ଯାଇଥାଏ । ସାଆଁଡ଼ା ଗଛ ଥୁଣ୍ଟା ବାଜି ତାର ନଖ ଗୋଟେ ଉଠିଗଲା । ସେ ବସି ପଡ଼ିଲା । ତାର ହୋସ୍ ପଶିଲା । ସେ ଏଣେ ଧାଉଁଛି କଣ, ଗଛର ଅବସ୍ଥା ତେଣେ କଣ ହେବଣି । ସେ ଗଛକୁ ଦେଖି ଆଉ ସମ୍ଭାଳି ପାରିଲାନି । ଆଖିରୁ ତାର ଲୁହ ଠସ୍ ଠସ୍ ବୋହି ପଡ଼ିଲା । ଅଖିଆ ଅପିଆ ସେ ସେହିଦିନ ନିବୁଜ କରି ବାଡ଼ ବୁଜିଲା । ଛୋଟିଆ ବାଟଟିଏ ରଖି ଧଡ଼ାଟିଏ ଲଗେଇଲା । ପ୍ରତିଦିନ ଯାଇଁ ଗଛକୁ ଦେଖେ । ଆସ୍ତେ ଆସ୍ତେ ସବୁ ପତ୍ର  ଗଛରୁ ଖସି ପଡ଼ିଲା । ସତେ କଣ ଆଉ ଗଛ ମୁଣ୍ଡ ଟେକିବ ? କେତେ ବଡ଼ କଳ୍ପନା ସେ କରିଥିଲା । ଠାକୁରାଣୀ ଗଛଠୁଁ ଆହୁରି ତା ଗଛ ବଡ଼ ହେବ । ସେ ବାହାଘର କରିବ । ତାର ପିଲାପିଲି ନାହାନ୍ତି । ଅପୁତ୍ରିକ ଦୋଷ କଟି ଯାଇଥାନ୍ତା । ପୁରୋହିତ କହିଥିଲେ । ଯେଉଁଠି ବସିଲାତ ସେ ଗଛ କଥା କହିଲା । ଦୋକାନ ଦୁଆରେ ସଞ୍ଜବେଳେ ବସି ବସି କହୁଁ କହୁଁ ଆଖି ତାର ସରତି ଆସିଲା, ସେ ଘରକୁ ଉଠି ଆସିଲା । କାଲି ସକାଳୁ ସେ ଷଣ୍ଢକୁ ପାଇଲେ ଆଗେ ତା ଗୋଡ଼ ଛୋଟା କରିବ । ରାତିରେ ଶୋଇଲାବେଳେ ସେଦିନ ନିଦ ତାର ଘଡ଼ି ଘଡ଼ି ଭାଙ୍ଗି ଯାଉଥାଏ । ମାଛି ଅନ୍ଧାରିଆ ବେଳୁ ସେ ଗଛ ପାଖକୁ ଗଲା । ପାଣି ଦି କଳସୀ ଆଣି ମୂଳରେ ଢାଳିଲା । ବର ଗଛକୁ ଆଉଁଷିବାକୁ ଗଲାବେଳେ କଣ ଉଞ୍ଚ ଉଞ୍ଚ ମାଲୁମ ହେଲା । ସେ ଆଖି ତରାଟି ଦେଖିଲା । ବହୁତ କୁଆଁ ଉଠିଛି । ସେ ଜିଭ କାମୁଡ଼ି ପକାଇଲା । ଏଇକ୍ଷିଣାତ ସେ କୁଆଁ ଭାଙ୍ଗି ଦେଇଥାନ୍ତା ? ସେଦିନ ତା ଆନନ୍ଦ କହିଲେ ନ ସରେ । ମହାଦେବଙ୍କ ମୁଣ୍ଡ ଉପରେ ଦିଟା ପାଚିଲା କଦଳୀ ଗୋଟାଏ ତମ୍ବା ପଇସା ଚଢ଼େଇବାକୁ ବ୍ରାହ୍ମଣକୁ ଦେଇ ଆସିଲା ।

ଦିମାସ ଛାଡ଼ି କଳକୁ ସେ ଧାନ ନେଇକି ଗଲା । ତା ସାଙ୍ଗରେ ଧାନ ବିକି ଲେଉଟିଲାବେଳେ ସାଉଁଟିଆଁ ଦିଅଣାର ବରା ଗୁଲୁଗୁଲା ତା ଝୁଆଙ୍କ ପାଇଁ କାନିରେ ବାନ୍ଧିଲା । ସାଉଁଟିଆ ସାଙ୍ଗରେ ଆସୁ ଆସୁ ତା ମନ କଣ ହେଇଗଲା । ସେ ପୁଣି ବଜାରକୁ ଫେରିଲା । ଚାଷ ଅଫିସରୁ ଦଶଣାର ସରକାରୀ ଖତ କିଣି କାନିରେ ବାନ୍ଧି ଫେରିଲା । କିମିତି ଖତ ଦେବ ସେ ଦଶଥର ପଚାରି ଆସିଥିଲା । ଗଛ ଚାରିପାଖ ଖୋଳି ସେ ଖତ ଦେଲା । ଖତ ଦେଇ ସାରି ସେ ଗଛର ଡାଳ ହାତରେ ଚିପିଲା । ଦୁଇ ହାତରେ ଗଛ ଦୁଇଟାର ଗଣ୍ଡିକୁ ମାପିଲା । ସରକାରି ଖତ ଦେଲେ ଗଛ ଖୁବ୍ ମୋଟା ହେବ । ସେ ଆଖି ବୁଜି ଭାବିଲା, ତା ଗଛର ଗଣ୍ଡି କେତେନା କେତେ ମୋଟା ହୋଇଯିବ । ଠାକୁରାଣୀ ଗଛ ଗଣ୍ଡିଠୁ ଢେର ମୋଟା । ସେ ହସି ହସି ଗଛକୁ କୁଣ୍ଢାଇ ପକାଇଲା ।

ପଦ୍ମନାଭ ଶୋଇ ଶୋଇ ଅତୀତ କଥା ଭାବି ଯାଉଥିଲା । ଉପରକୁ ଚାହିଁଲା । ଚାରିଆଡ଼େ ବର ଡାଳ, ଓସ୍ତଗଛ ବରଗଛର ଘେର ଭିତରେ ଠିଆ ହୋଇଛି । ଖଣ୍ଡେ ଦିଖଣ୍ଡ

ବରଡାଳ ଓସ୍ତର କେନା ଭିତରେ ପଶି ସେପଟକୁ ଲମ୍ବି ଯାଇଛି । ଦୁଇଟା ଗଛ ଆଉ ଛନ୍ଦାଛନ୍ଦି ହେଇ ଉପରକୁ ଉଠୁଛନ୍ତି । ପାଖ ଗାଁରୁ ବାଣଟେ ଫୁଟିଲା, ବାଜା ବାଜି ଉଠଲା । କାହାର ବାହାଘର ହେଉଛି- ଦିଅଁ ମଙ୍ଗୁଳି ପାଇଁ ବାହାରୁଛନ୍ତି ହୋଧହୁଏ । ପଦ୍ମନାଭର ବାହାଘର କଥା ମନେ ପଡ଼ିଲା । ଗଛ ଖୁବ୍ ମାତବର ହୋଇ ବଢ଼ି ଯାଉଥାଏ । ପୁରୋହିତ ଗୋସେଇଁ ଦିନେ ଆସି କହିଲେ- "ଗଛରେ ଫଳ ହୋଇଗଲେ ବୃଥା ହୋଇଗଲା । ଆଉ ପୁଣ୍ୟ ନାହିଁ । ତୋ ଗଛ ଯେମିତି ବଢ଼ୁଛନ୍ତି ଶୀଘ୍ର ଫଳିଯିବେରେ । ଶୀଘ୍ର ବାହାଘର କରିପକା । ଏକମାସ ଭିତରେ ନକଲେ ଆଉ ଲଗନ ନାହିଁ ।" ସତକଥା, ତା ମନରେ ଦକ ଆସିଲା । ନରଣପୁର ମୁଣ୍ଡରେ ଏଡିକ ବଡ଼ ଗଛ 'ଳିଗଲାଣି, ସେ ଦେଖି ଆସିଛି । କଣ କରିବ ? ସେ ତ ଆଗରୁ ଜାଣି ନଥିଲା । ତା ଜୀବନରେ ଏଇ ଗୋଟିଏ ବୋଲି କାମ । ଭଲକରି କରିବ । ପାଞ୍ଚଜଣ ତା ଦୁଆରେ ପତର ପକାଇବେ । ରାତିରେ ଯାଇଁ ବାକ୍ସ ଅଣ୍ଡାଳିଲା । ଦିକୋଡ଼ି ଟଙ୍କା ହୁଏ କି ନହୁଏ । ଶେଷକୁ ଭାବି ଭାବି ଠିକ୍ କଲା । ଜମିଦିମାଣ ଅଛି କଣ ହେବ ? ଦି ପା ଜମି ସେ ବିକି ଦେଲା । ତାପରେ ହାତକୁ ଟଙ୍କା ଆସିଲା ପରେ ସେ ଲାଗି ପଡ଼ିଲା । ପୁରୋହିତ ପାଖରୁ ତାଲିକା ନେଇ ଆସି ଜିନିଷ ଯୋଗାଡ଼ରେ ଲାଗିପଡ଼ିଲା । ଏକା କାମକୁ ପାରିବନି ବୋଲି କୁହାବୋଲା କରି ପିଉସୀକୁ ଘରକୁ ଆଣିଲା । ଭଉଣୀ ଭିଣେଇ ପାଖକୁ ବେଉରା ପଠାଗଲା । ଏଇତ ତାର ଗୋଟିଏ ବୋଲି କାମ । ପାଞ୍ଚଜଣକୁ ଖୋଜିବନି ଲୋଡ଼ିବନି କିମିତି ? ଗାଁର ପୁରୁଖା ପୁରୁଖା ଲୋକଙ୍କୁ ଡାକି ପାଞ୍ଚକଥା ପଚାରି ବୁଝି ନେଉଥାଏ । ବାହାଘର ଆଗଦିନ ରାତିରୁ ତାର ନିଦ ନଥାଏ । ସକାଳୁ ଗାଧୋଇପଡ଼ି ଦିଅଁ ଦର୍ଶନ କରି ଆସି ଓପାସ ରହିଲା । ବାହାଘର ଆରମ୍ଭ ହେଇଗଲା । ଭଲ ତେଲିଙ୍ଗି ବାଜା ଦେଖି ବରାଦ କରିଥାଏ । ତା ଭଉଣୀ ଏ କଥା ଦେଖି କାହିଁକି ଚିତ୍ ଚିତ୍ ହେଉଥାଏ । ଗାଁରେ କିଏ କିଏ ବି ହସୁଥିଲେ । ସେଥିରେ ତାର କ'ଣ ଅଛି । ତା ଘରେ ବାହାଘର, ବାଜା ବସିବନି ? ସୋଲରେ ମୁକୁଟ ଭଲ ହେବନି ବୋଲି ଫୁଲରେ ମୁକୁଟ ବରାଦ କରିଥାଏ । ଭଲ ଗଜରା ଫୁଲ ହାର ଆଣି ପାଣିଛିଞ୍ଚି ରାତିରୁ ରଖିଥାଏ, ବରଗଛ ଓସ୍ତଗଛ ଡାଳରେ ଫୁଲ ହାର ଝୁଲେଇ ଦେଲା । ଗଛମୂଳରେ ବେଦୀକରି ଝୋଟି ପକାଇଥାଏ । ବରଗଛ କନିଆ ଓସ୍ତଗଛ ବର, ବାହାଘର କଲା । କଳା ସୁନେଲି ଗାର ଟଣା କାଚ ଆଠ ପଟ ଆଣିଥିଲା । ନାଲି ଶଙ୍ଖା ଚାରିପଟ ବି କିଣିଥିଲା । ବରଗଛ ତଳ କେନାରେ ଝୁଲାଇ ଦେଲା । ବରଗଛ ପାଇଁ ନାଲିରଙ୍ଗର ଆଲପକା ଶାଢ଼ୀ ଖଣ୍ଡେ ଆଣି କେଉଁଦିନରୁ ପେଟରାରେ ରଖିଥିଲା । ଗଛରେ ବେଢ଼ାଇଦେଲା । ଓସ୍ତଗଛ ଡାଳରେ ପତଳା ଚଉଡ଼ା ଧଡ଼ିବାଲା ଧୋତିଖଣ୍ଡେ ବାନ୍ଧି ଦେଲା । ପୁରୋହିତ ମନ୍ତ୍ର ପଢୁଥାନ୍ତି । ସେ ବରଣ କରି ଓସ୍ତଗଛର ତଳ ଚେରକୁ ଧୋଇଦେଲା । ବରର ଗୋଡ଼ ଧୋଇବାକୁ ହେବ । ପିଢ଼ା ଖଣ୍ଡକ ହଳଦି ବୋଳା ହେଇ ନଥିଲା ବୋଲି ଭଣ୍ଡାରୁଣୀ ଉପରେ ଭାରି ଚିଡ଼ିଲା । ହାତଗଣ୍ଠି ପଡ଼ିଲା । ବରଡାଳ ଓସ୍ତଡାଳକୁ ପୁରୋହିତ ମନ୍ତ୍ର ପଢ଼ି ବାନ୍ଧିଦେଲା । ତା ଆଖିରେ ଆଉ ଲୁହ ଜାଗା ଧରିଲା ନାହିଁ । ଗାଲ ବୁଡ଼ାଇ ତଳକୁ ବୋହି ଚାଲିଲା, ସେ କଥା କହି ପାରୁ ନଥାଏ ।

ଖାଲି ଗଛଡାଳ ଦୁଇଟାକୁ ଧରି ଭୋ ଭୋ କାନ୍ଦି ଉଠୁଥାଏ । ଶଙ୍ଖ ବି ଜୋର୍‌ରେ ବାଜୁଥାଏ । ସେ ଲୁହ ପୋଛି ପୁରୋହିତଙ୍କ ଗୋଡ଼ତଳେ ପଡ଼ିଲା ।

ବାହାଘର ହେବା ବହୁତ ଦିନ ହେଇଗଲାଣି । ଗଛ ତାର ଖୁବ୍ ବଡ଼ ହୋଇ ଗଲାଣି । ସେ ବି ଖୁବ୍ ବୁଢ଼ା ହେଇ ଗଲାଣି । ଆଜିକାଲି ଯେତେବେଳେ ପାରେ ସେତେବେଳେ ସେ ଆସି ଗଛମୂଳ ପିଣ୍ଡିରେ ଶୁଏ । ଭଲ କିଛି ଘଟିଲେ ସେ ଧାଇଁ ଆସେ । ମନ୍ଦ ଘଟିଲେ ତ ସେ ନ ଆସି ରହି ପାରେନା । ଆଉ ତାର କିଏ ଅଛି ? କାହାକୁ କହିବ ସେ । ସେ ଅସୁନ୍ଦର । ତାକୁ ସମସ୍ତେ ଥଟ୍ଟା କରନ୍ତି । ସେ ପାଗଳ, ସମସ୍ତେ ତାଳି ପିଟନ୍ତି । ଯେଉଁ ମଣିଷଙ୍କ ସାଙ୍ଗରେ ସେ ମିଶିଛି, ସେମାନେ କଥା କହନ୍ତି । ସେ କଥାରେ ଦରଦ ନଥାଏ । ଖାଲି ବିଦ୍ରୂପ ଥାଏ । ଏ ଗଛ ଦୁଇଟାଙ୍କ ପାଖରେ ସେ ତାର ଦୁଃଖ ସୁଖ ସବୁ କହେ । ଗଛ କଥା କହନ୍ତିନି ସତ ; ତାକୁ ଜଣାଯାଏ ଗଛର ପ୍ରତି ଡାଳ ପତରରୁ ଯେମିତି ସହାନୁଭୂତି ଝରି ପଡୁଛି । ସେଦିନ ନିଧି ସାମଲ ତାକୁ ମାଇଲା । ତା ମୁଣ୍ଡକୁ ପିତ ଚଢ଼ିଗଲା । ତାକୁ ପିଟି ସାବାଡ଼ କରିବ ବୋଲି ଠିକ୍ କରି ଗଛ ମୂଳକୁ ଆସିଲା । ଦେଖିଲା, ପାଣ ସାହି ରତନା ବରଗଛରୁ ବଡ଼ ଡାହିଟେ ହାଣି ପକାଇଛି । ଗୋରୁଙ୍କୁ ଡାଳରୁ ପତର ଗୁଡ଼ାକ ଖାଇବାକୁ ଦେଇ ଗଛମୂଳେ ଛାଇରେ ଶୋଇଛି । ତେଣୁତ ରାଗିକରି ସେ ଆସିଥିଲା । ରତନାକୁ ପିଟିବାକୁ ଧଉଡ଼ିଲା । ରତନା ଡରରେ କୁଆଡ଼େ ନଯାଇ ଗଛମୂଳେ ବସି ଥରୁଥାଏ । ସେ ଗଛ ଉପରକୁ ଚାହିଁଲା । ଗଛରୁ ଡାଳହଣା ଯାଇଛି । ଗଛର ଦିହ କାଟିଦିଆ ହେଇଚି । ତେବେ ବି ତ ରତନା ତା ଛାଇରେ ଶୋଇଛି । ରତନାଠୁଁ ଗଛତ ଛାଇ ଛଡ଼େଇ ନେଇନି । ତା ମନ ବଦଳିଗଲା । ସେ ରତନାକୁ ବହୁତ ବୁଝେଇଲା । ନିଧି ସାମଲକୁ ମାରିବ କଣ ଓଲଟି ତା ପୁଅକୁ ବାଡ଼ିରୁ ପିଜୁଳି ଦିଅଣ୍ଡା ଦେଇ ଆସିଲା । ଥରେ ତା ପାକଲା ଧାନ କିଆରୀରେ ଗାଈଆଳ ଟୋକାଏ ଗୋରୁ ପୁରାଇ ଦେଲେ । ସେଦିନ ଦୁଇ ତିନିଙ୍କୁ ଚ୍ୱାପଡ଼ ଗୋଟାଏ ଲେଖାଏଁ ଦେଲା । ତାପରେ ଛୁଆଗୁଡ଼ାକ ମେଣ୍ଟ ବାନ୍ଧି ଗୋଡ଼ାଇଲେ । କିଛି ନ ପାଇ ସେ ଧାଇଁ ଆସି ଓସ୍ତଗଛ ଉପରକୁ ଚଢ଼ିଗଲା । ଯାଇ ଉପର ଡାଳରେ ବସିଲା । ପିଲାଏ ବି ଚଢ଼ି ପାରିଲେ ନାହିଁ । ଟେକାମାଇଲେ ଯେ ଉପରକୁ ଯାଇପାରିଲା ନାହିଁ । ଗଛଲାଗି ସେଦିନ ସେ ରକ୍ଷା ପାଇଗଲା । ସେଦିନ ଭଉଣୀ ମଲାବୋଲି ସେ ଖବର ପାଇଲା । ଗୋଟିଏ ବୋଲି ଭଉଣୀ ଥିଲା, ସେ ବି ଚାଲିଗଲା । ଦୁଃଖରେ ତା ଛାତି ଫାଟିଗଲା । କାହାକୁ କିଛି ନ କହି ଗଛ ମୂଳକୁ ଆସିଲା । ବେଦୀ ଉପରେ ଶୋଇପଡ଼ି ଗଛକୁ ଚାହିଁ କାନ୍ଦିଲା । ଗଛରୁ ଶିରି ଶିରି ଥଣ୍ଡା ପବନ ବାଜି ତା ଆଖି ଲାଗି ଆସିଲା । ସେ ସବୁ ଭୁଲି ଶୋଇ ପଡ଼ିଲା ।

ପଦ୍ମନାଭ କେତେ ନା କେତେ କଥା ଭାବି ଯାଉଥାଏ । ଭାବୁ ଭାବୁ ତା ଆଖିରେ ଲୁହ ଖେନ୍ଦି ହୋଇଗଲା । ଏଇ ଗଛ ଦୁଇଟାଙ୍କ କଥା ସେ ସବୁ ବେଳେ ଭାବିଛି । ୟାଙ୍କରି ପାଇଁ ସେ ହସିଛି । ସେ କାନ୍ଦିଛି । ଏହି ହସ କାନ୍ଦ ଭିତର ଦେଇ ତାର ସାରା ଜୀବନଟାକୁ ସେ ଉପଭୋଗ କରିଛି । ତାର କେହି ନାହିଁ ଦୁନିଆରେ କହନ୍ତି । କିନ୍ତୁ ସେ ଯେମିତି ତାର ଅତି

ଆପଣାର ପାଇଁ ସବୁବେଳେ ବ୍ୟସ୍ତ ରହିଛି । ତାକୁ ସମସ୍ତେ ପାଗଳ କହନ୍ତି । ଗଛଟା ପାଇଁ କାନ୍ଦୁଛି ବୋଲି ଥଟ୍ଟା କରନ୍ତି । ଗଛ ପାଇଁ କାନ୍ଦିଲେ ସେ କେବଳ ଶାନ୍ତି ପାଏ ।

ପଦ୍ମନାଭ ଗଛମୂଳରେ ଶୋଇ ରହିଥିଲା । ଚାରି ଜଣ ହାଟୁଆ ଆସି କାନ୍ଧରୁ ବୁଜୁଚା ଓହ୍ଲାଇ ଦମ୍ ମାଇଲେ । ଗାମୁଛାରେ ବିଞ୍ଚି ହେଉ ହେଉ ଜଣେ କହିଲା- "ଧନ୍ୟ ଧନ୍ୟ, ଏ ଗଛ ଯିଏ ଲଗେଇଛି, ଏଠି ବସିଲେ ମଣିଷର ପ୍ରାଣ ପଶି ଯାଉଛି ।" ଆଉ ଜଣକ ଗୁଆକାତିରେ ଗୁଆ ଭାଙ୍ଗୁ ଭାଙ୍ଗୁ ଗୁଣ୍ଡି ଟିକିଏ ପାଟିରେ ପକାଇ ଛେପ ଛାଟି କହିଲା- "ଗଛ ଦୁଇଟା କି ବାଗରେ ହୋଇଛନ୍ତି, ସତେ ଯେମିତି କିଏ ଚିତ୍ର କରି ଆଙ୍କିଛି- କେଡ଼େ ସୁନ୍ଦର ସତେ ମଁ ?" ପଦ୍ମନାଭ ବେଣ୍ଟା ଟେକି ଅନେଇଲା । ଆଉ ଜଣେ ଫାଟିଗଲା ବର ଫଳଟେ ଦେଖି କହିଲା- "ଏଇ ମଞ୍ଜିରୁ ଏକ ତରୁ- ଦେଖି ହସିଲେ ରାଜା କୁରୁ ।" କେଡ଼େ ଛୋଟ ମଞ୍ଜିରୁ କେଡ଼େ ଗଛ ହୋଇ ପାରୁଛି । କଲେ ସବୁ ହୁଏ । ଅସଲ ହେଉଛି ମନ । ପଦ୍ମନାଭ ଫଳଟେ ଆଣି ଚିପି ଦେଲା । ଛୋଟ ମଞ୍ଜିରୁ ସେ ଏତେ ବଡ଼ ଗଛ କରିଛି । ବାହାମୂଳ ତାର ଚେଇଁ ଉଠିଲା । ବାଟୋଇ ଚାରିଜଣ ତାଟକା ହୋଇ ଚାହିଁଲେ । ଚତୁର୍ଥ ଜଣକ କହିଲା- "ଜାଣିନାକି ଏଇ ପାଗଳା ପରା ଏ ଗଛ ଲଗାଇଛି । ସବୁବେଳେ କି ଖରା କି ବର୍ଷା ଏଇଠି ଆସି ପଡ଼ିଥିବ । ପ୍ରଥମ ଜଣକ କହିଲା "ହଁ ଭାଇ କାହା ହାତରେ କଣ ହେଉଛି, କିଏ କହିବ ? କାହାର ସୁନା ଛୁଇଁଲେ ମାଟି ତ, କାହାର ମାଟି ଛୁଇଁଲେ ସୁନା । ଏଇ ଗାଁ ଚନ୍ଦ୍ରଶେଖର ବାବୁଙ୍କୁ ଦେଖୁନ । କେଡ଼େ ବଡ଼ ବିଦ୍ୱାନ ଲୋକ । ବଡ଼ ପୁଅ ଦିପଟି ହୋଇଛି । ନାଁ ବିକାଶୁଛି । ସାନ ପୁଅ ପାଇଁ ବାପ ଯେତେ ଚେରେଷ୍ଟା କରିଛି କୁହନା କୁହନା । ପାଠ ପଢ଼ିଲାନି । ଶେଷକୁ ଚୋରିକରି କାଲି ଜେଲ ଗଲା । ବଅଁଶର ନାଁ ପକେଇଲା ।"

ପଦ୍ମନାଭ କାନ ଡେରି ସବୁ ଶୁଣୁଥିଲା । ସେ ଆଖି ଖୋଲି ଭଲ କରି ଗଛକୁ ଚାହିଁଲା । ମଝିରେ ମଝିରେ ଗଛ ଉପରେ ଖରା ଝୋଟି ଦେଲା ଭଳି ଛାଟି ହେଇ ପଡ଼ିଛି । ଓସ୍ତ ପତର ଖରାରେ ଗୋଟେ ଚିକ୍ ଚିକ୍ କରି ଉଠିଲା । ପବନ ଜୋର୍‌ରେ ଥରେ ବହିଗଲା । ଗଛର ପତ୍ର ସବୁ ଗୋଟେ ଆଡ଼କୁ ଆଉଜି ଯାଉଛି । ଦେଖି ଦେଖି ଆଖି ତାର ପୂରି ଉଠିଲା । ସେ ତଳକୁ ଚାହିଁଲା । ସାଗୁଆ ରଙ୍ଗର ଘାସ ଉପରେ ଲାଲ ବରଫଳ ସାଧବ ବହୂ ପୋକଭଳି ବିଛେଇ ହୋଇ ପଡ଼ିଛି । ସେ ଆଖି ବୁଜିଲା । ଓଠରୁ ତାର ହସ ଝରି ଆସୁଥିଲା । ଚନ୍ଦ୍ରଶେଖର ବାବୁଙ୍କ ପୁଅ ଚୋରି କରିଛି- ଜେଲ ଯାଇଛି- ଦିପଟିଠୁ ବଡ଼ ହେଇନି- ଚନ୍ଦ୍ରଶେଖର ବାବୁ କ୍ଷଣେ ଆଗରୁ ତାକୁ ଟେକି ନେଇଥିଲେ.... ସେ କ୍ଷଣେ ଆଗରୁ ଗଛକୁ ଆଣିଥିଲା- ତା ଗଛ ବଡ଼ ହୋଇଛି- ଛାଇ ଦେଇଛି- ସେଠି ଚଢ଼େଇ ବସା କରିଛି- ଆଃ... ପଦ୍ମନାଭକୁ ନିଦ ମାଡ଼ି ଆସୁଥିଲା । ସେ ଦେଖୁଥିଲା ଗଛର ଅଗ ତାର ସରଗକୁ ଛୁଉଁଛି... ଗଛର ଗଣ୍ଡି ଠାକୁରାଣୀ ଗଛଠୁ ଢେର ମୋଟା... ବରକନ୍ୟା ଦୁଇ ଜଣଙ୍କର....



# ସେନାପତି

ମୁଁ ରାଜା ନଥିଲି । ମୋର ରାଜ୍ୟ ନଥିଲା । ରାଜନବର ନଥିଲା । ଦାସ ଦାସୀ ନଥିଲେ । ସୈନ୍ୟସାମନ୍ତ ନଥିଲେ । କିନ୍ତୁ ମୋର ସେନାପତି ଥିଲା । ବେଳେବେଳେ ମୋ ସେନାପତିକୁ ନେଇ ମୋ ଭିତରେ ମୁଁ ଏକ ଅସମ୍ଭବ ସାମର୍ଥ୍ୟର ଅହଂକୁ ଜଣେ ପ୍ରବଳ-ପରାକ୍ରମୀ ସମ୍ରାଟ ପରି ଅତି ଭୟଙ୍କର ଭାବରେ ଅନୁଭବ କରୁଥିଲି । ମୋର ବଞ୍ଚିବାର ଦୟନୀୟ ଦୃଃସ୍ଥିତି ମୋ ଉପରେ ହୀନମନ୍ୟତାର ଶକ୍ତ ଆସ୍ତରଣ ଲଦି ଲାଦି, ମୋ ଭିତରର ପୌରଷକୁ ମାଡ଼ି ମାଡ଼ି ବରଫର ମୁଣ୍ଡା ପରି ପଙ୍ଗୁ କରି ସେଇଠି ଫିଙ୍ଗି ଦେଇଥିଲା । ବେଳେବେଳେ ମୋ ସେନାପତିର ଶୌର୍ଯ୍ୟ ମୋ ଉପରର ବହଳ ଖୋଳପାକୁ ଫଟାଇଦେଇ ମୋର ସଦାଦଳିତ୍ କ୍ଳେଦାକ୍ତ କ୍ଲୀବସତ୍ତାକୁ ପର୍ଯ୍ୟାପ୍ତ ଉତ୍ତାପ ଦେଉଥିଲା । ଏହି ଅନୁଭୂତିର ମୁହୂର୍ତ୍ତଗୁଡ଼ିକ ମତେ ଏକ ଉନ୍ମୁକ୍ତ ମଣିଷର 'ମୁଁ ମୁଁ' କାରର ସ୍ୱାଦୁ ଦେଇ ମୋର ସ୍ଥାଣୁ ଜୀବନକୁ ଜୀବନ୍ତ କରି ପକାଉଥିଲା ।

ମୁଁ ମୋ କଥା ଟିକିଏ କହେଁ । ତା'ପରେ ମୋର ଓ ମୋ ସେନାପତିର ଇତିକଥାକୁ ମିଶାମିଶି କରି ଶୁଣେଇବି । ଆଜିକାଲି ତ ରାଜାଙ୍କ ଜମାନା ଯାଇଛି । ଏବେକାର ଶକ୍ତି ସଂପ୍ରଦାୟର ଦରବାରରେ ବିଜେ ହେଉଛନ୍ତି ବୀରାଧିବୀରବର ମୂର୍ତ୍ତିମୟ 'ମୁଁ ମୁଁ' କାରର ମହାମହିମ ମନ୍ତ୍ରୀ ମହାମାନ୍ୟମାନେ ଏବଂ ଏମନ୍ତ ଶ୍ରୀଛାମୁମାନଙ୍କ ଶ୍ରୀମନକୁ ଘେନାଇ, ମନାଇ ସଦା-ସେବାବ୍ୟସ୍ତ ଶ୍ରୀହଜୁରମାନଙ୍କ ମର୍ଜି ଠିକାଦାର ଦଳ ଓ ଏସବୁ ସ୍ତରର ସମସ୍ତ ପ୍ରତାପୀମାନଙ୍କ ପ୍ରତାପକୁ ଜାହିର କରିବାକୁ ସଦାତତ୍ପର ବର୍ଗମନ୍ୟ ସେମାନଙ୍କର ଚାଣୁର ମୁଷ୍ଟିକ ମଲ୍ଲମଣ୍ଡଳୀ । ଆଉ ଶେଷରେ ଏଇ ସେବାଧନ୍ୟ କ୍ଷମତା ଦଲାଲଙ୍କୁ ମାଲିସ କରି ନିଜକୁ ଗଣ୍ୟମାନ୍ୟ କରୁଥିବା ସେବାସନ୍ନିଧାନର ସଚ୍ଚୋଟ ସଂରକ୍ଷକ ଏଠି ସେଠିକାର କୁଜୀ କୁଜୀ ନେତା ସୈନ୍ୟବାହିନୀ । ଏ ଶକ୍ତି-ସଂଗଠନର ରାଜ-ରାସ୍ତା ଠାରୁ ଅନେକ ଦୂରରେ ମଣିଷ ଜଙ୍ଗଲ  ଭିତରେ ଲୁଚି ରହିଥିବା ଛୋଟିଆ କଣ୍ଟାବୁଦା ଭଳି ମୁଁ ଜଣେ ସାଧାରଣ ମଣିଷର ତଳପାହିଆ ଜୀବ । ଏ ହେଲା, ମୁଁ ରାଜା ହେବାକୁ ମୋ ହେବାପଣିଆର ଟିପ୍ପଣୀ । ରାଜ୍ୟକଥା ? ମୋର ନିଜର ବୋଲି ଏକ ଇଞ୍ଚ ଜାଗା ନଥିଲା । ମୋ ରାଜନବରର  ବର୍ଣ୍ଣନା

ଦେବାକୁ ମୁଁ କହୁଛି ଯେ ମୁଁ ଏକ ଅଳ୍ପ ଭଡ଼ାର ଭଡ଼ାଘରେ ସବୁ ଅସୁସ୍ଥତା ଓ ସମସ୍ତ ଅସୁବିଧାସହ ଆଶ୍ରୟ ନେଇଥିଲି । ଆଉ ମୋର ଦାସଦାସୀ ଉତ୍ତର କବାଟ, ଦକ୍ଷିଣ କବାଟ, ମହାମନ୍ତ୍ରୀ, ମହାସୁଆର, ପାଇକ, କରନ୍ଦାଜ ଇତ୍ୟାଦିର ସବୁ ଦାୟିତ୍ୱ ତୁଲେଇବାକୁ ମୋ ଧଡ଼ାଦିଆ ଭଡ଼ା ଉଆସରେ ଥିଲେ ମୋର ଗୋଟାଏ ସଦା ଅବାଧ୍ୟ ଅତିରୁଗ୍ଣା ସ୍ତ୍ରୀ ଓ ଦୁଇଟା ପ୍ରାୟ ଅବାଧ୍ୟ, ଅସୁସ୍ଥ ପୁଅଝିଅ । ଏଇ ମୋର ରାଜ ଆଡ଼ମ୍ବରର ବାସ, ବ୍ୟସନ ଓ ଶାସନର ଇତିହାସ । କିନ୍ତୁ ମୁଁ ପୁଣି ମନେପକାଇ ଦେଉଛି, ସେନାପତିର ସମସ୍ତ ପ୍ରମତ୍ତତା ନେଇ ମୋର ଏକ ଶକ୍ତିଶାଳୀ ସେନାପତି ଥିଲା ।

ମୋର ସେନାପତି ଥିଲା ସେନାପତି । ଅର୍ଥାତ୍ ସେନାପତି ନାମକ ଶାବ୍ଦିକ ବ୍ୟାଖ୍ୟାକୁ ଯଥୋଚିତ ନ୍ୟାୟ ଦେଇ 'ସେନାପତି' ଡାକନାମ ଧରି ମୋ ପାଖରେ ରହିଥିବା ମୋର ଅତି ଅନୁଗତ ଖାଣ୍ଟି ଦେଶୀ କୁକୁର କୁମାରଟି । ମୋ ପାଖରେ ଥିବା ପର୍ଯ୍ୟନ୍ତ ସେ କୁମାର ଅବସ୍ଥାରେ ଥିଲା । ତାକୁ କୁମାର କହିବାର ଅର୍ଥ ନୁହେଁ ଯେ ଅତି ନିଷ୍ପାପର ଭାବରେ ତାର କୌମାର୍ଯ୍ୟକୁ ରକ୍ଷା କରି ସେ ବ୍ରହ୍ମଚର୍ଯ୍ୟ ବ୍ରତର କୃଚ୍ଛ୍ର ସାଧନା କରୁଥିଲା । ବରଂ ତାର ଯୌନଲାଳସା ସାଧାରଣ କୁମ୍ଭରଠାରୁ ଯଥେଷ୍ଟ ବେଶୀ ଥିଲା । ତା'ର ନିଟୋଳ ସ୍ୱାସ୍ଥ୍ୟ, ଅସାଧାରଣ ସାମର୍ଥ୍ୟ ଓ ପ୍ରଚଣ୍ଡ ସାହାସିକତା ତା'ର ଯୌନଚେତନାକୁ ଅତିବେଶୀ ଉତ୍ତେଜିତ କରି ପକାଉଥିଲା । ମୁଁ ତାକୁ କୁକୁରର ଚଳଣି ନାଁରେ 'ଭାଲୁଆ' 'କାଳିଆ' ଇମିତି ପ୍ରଥମେ ଡାକୁଥିଲି । ତା'ର ମୋର ଆନ୍ତରିକତାକୁ ପୂରାପୂରି ଥଟ୍ଟା କରି ହେଉ ବା ଶ୍ରଦ୍ଧା ମିଶା ଖିଆଲରେ ହେଉ, ତାକୁ ମୋ ନାଁ ଧରି ଅମକେଇଙ୍କ ସେନାପତି ବୋଲି କେତେଜଣ ଡାକିବାକୁ ଆରମ୍ଭ କରିଦେଲେ । ତା' ପରେ ତା' ସର୍ବସାଧାରଣ ଡାକ ନାଁ ହେଲା, ସେନାପତି । ମୁଁ ବି ତାକୁ ସେନାପତି ବୋଲି ଡାକିଲି ।

ସେନାପତିର ମୋ' ଦରବାରରେ ସେନାପତି ନିଯୁକ୍ତି ପଛରେ ଗୋଟେ ଘଟଣାର ଇତିହାସ ଥିଲା । 'ସେନାପତି' ପ୍ରଥମେ ପହରାଦାର କାମ କରୁଥିଲା । ମୋ' ଭଡ଼ାଘର କଡ଼କୁ ଇଟା ପାଚେରୀ ଘେରା ଜଣେ ମାରଓ୍ୱାଡ଼ି ବାବୁଙ୍କର ଏକ ପ୍ରଶସ୍ତ ଫଳ ବଗିଚା ଥିଲା ମାରଓ୍ୱାଡ଼ି ମହାଶୟ ସେନାପତିକୁ (ସେତେବେଳେ ତା' ନାଁ କ'ଣ ଥିଲା, ଜାଣେନି) ଖାଣ୍ଟି ନିରମିଷ ଖୁଆଇ ବଗିଚାର ଚୋରଙ୍କ ସାଙ୍ଗରେ ଲଢ଼ିବାପାଇଁ ଚଉକଷ ଆମିଷାସୀ ସମରର ତାଲିମ ଦେଉଥିଲେ । ସେତେବେଳକାର ପହରାଦାର ରାସ୍ତାରେ କେତେବେଳେ କେମିତି ଟହଲମାରି ଦେଇ ଯିବାର ମୁଁ ଦେଖିଛି, କଜ୍ଜ୍ୱଳ କଳା ଦେହ । ଆଖିକି ଲଗାଇ କପାଳରେ ଧଳାର ଛେଉଛେଉକା ଚିହ୍ନ । ଲମ୍ବା ଗଠନ । ଗଳାମୂଳଟା ସବୁବେଳେ ଫୁଲିକି ଥାଏ । ବେଲକୁ ରେକା ପାଇବନି । ଲାଲ ଆଖିରେ ସବୁବେଳେ ଆକ୍ରମଣର ଚାହାଣି । ଅନ୍ୟ କୁକୁର ତାକୁ ଦେଖିଲେ ପ୍ରକୃତି ମେଣ୍ଟାଇବାକୁ କ୍ରମାଗତ ଗୋଟାକପରେ ଗୋଟାଏ ପାଟି କମ୍ପାନ୍ତି ସତ, କେହି ତା' ବୟାରରେ ପଶନ୍ତି ନାହିଁ । ସମବେତ ଶତ୍ରୁଦଳଙ୍କୁ ସେ ଆକ୍ରମଣ କରିବାକୁ କେବେ ଆଗେଇ ଯାଏନାହିଁ । କେବଳ ଷେଣ୍ଟାଟେକି ଲମ୍ବା ଲମ୍ବା ଛାମୁଦାନ୍ତ ଆଗକୁ କାଢ଼ି ଥରେ

ଦି'ଥର ଦାଲିକି ଦିଏ । ସେଇଠିରେ ଶତ୍ରୁପଲ ଭୁକି ଭୁକି ପଛକୁ ପଛକୁ ଘୁଞ୍ଚି ଘୁଞ୍ଚି ପଳାନ୍ତି ।

ଥରେ ମୋ ବସାଘର ପାଖରେ ଏକ ଯୁବ-ଅନୁଷ୍ଠାନ ତରଫରୁ ସରସ୍ୱତୀ ପୂଜାର ଆୟୋଜନ ହେଲା । ଖାନାପିନାର ଆସର ବସିଲେ କୁକୁର ଅବଶ୍ୟ ଆସିବେ । ପାଖାପାଖିରୁ କୁକୁରପଲ ପହଞ୍ଚି ଗଲେ । ମାରଓ୍ୱାଡ଼ିଙ୍କ ପହରାଦାର ବି ଆସିଥିଲା । ଗତାନୁଗତିକ ଭାବରେ ଚଢ଼ାଚଢ଼ି ହୋଇ ସମସ୍ତେ ଅଇଁଠାପତ୍ର ଉପରକୁ ଝାମ୍ପ ମାରିଲେ । ଖାଇବା ଶେଷ ପୂର୍ବରୁ ଖାଇବା ଜାଗାକୁ ପଶିଯିବାକୁ ସେମାନେ ପଛେଇଲେ ନାହିଁ । ସେମାନଙ୍କୁ ତଡ଼ିବାକୁ ଠେଙ୍ଗାର ବ୍ୟବହାର କରିବାକୁ ପଡ଼ିଲା । ନିମନ୍ତ୍ରିତ ଭଦ୍ରବ୍ୟକ୍ତି ଭାବରେ ମୁଁ ଟିକିଏ ଡେରିରେ ପହଞ୍ଚିବାରୁ ମତେ ଟିକିଏ ପଛରେ ଖାଇ ବସିବାକୁ ଅନୁରୋଧ କରାଯାଇ ବାହାରେ ଅପେକ୍ଷାକରି ବସିବାକୁ ବ୍ୟବସ୍ଥା କରି ଦିଆଯାଇଥିଲା । ପୂଜା ଉଦ୍ୟମକାରୀଙ୍କ ଫରମାସୀ ଗୀତ 'ଚାଲ ଗୋରୀ, ପଳାଇଯିବା ସହର' ର ଲହରୀ ସାଙ୍ଗରେ ତାଳଦେଇ ମାଡ଼ଖାଇ ବୁଲା କୁକୁରଙ୍କ ପଳାଇଯିବା ଓ ପୁଣି ଫେରିଆସିବାର ଅଭିନୟକୁ ମୁଁ ବସି ବସି ଦେଖୁଥିଲି । ମାରଓ୍ୱାଡ଼ି କୁକୁର କିନ୍ତୁ ବିକଳିଆ କୁକୁରଦଳଙ୍କର ଏଇ ପଶିବା ଓ ପଳେଇବା ଧନ୍ଦାରେ ନ ମିଶି ଗୋଟେ ଜାଗାରେ ଷେଣ୍ଟା ଟେକି ଠିଆ ହୋଇଥାଏ । ଜଣେ ପରିଷିଲାବାଲା ପୁରିଝଙ୍କାକୁ ଧରି ଆସିଲାବେଳେ ତାକୁ ବାଟରେ ହାବୁଡ଼ିଗଲା ଏବଂ ରାଗରେ ସେଟାକୁ ହଟାଇଦେବାକୁ ଠେଙ୍ଗାଧାରୀ ଟୋକାକୁ ଡାକଟାଏ ମାରିଲା । ଠେଙ୍ଗାଧାରୀ ଧାଇଁ ଆସି ତା' ଉପରେ ବାଡ଼ି ଉଠେଇବାକ୍ଷଣି ସେ ପୁରି ପାଛିଆ ଉପରକୁ ଝାମ୍ପ ମାରିଲା । ପୁରିଗୁଡ଼ାକ ତଳେ ଛାଟିହୋଇ ପଡ଼ିଲା । ତା' ପରେ ଠେଙ୍ଗା ଧରିଥିବା ଲୋକକୁ ଚାହିଁ ଏମିତି ଦାଲକି ଦେଲା ଯେ, ତା' ହାତରୁ ବାଡ଼ିଟା ଖସିପଡ଼ିଲା । ଏକାଥରରେ ଆଠ ଦଶଖଣ୍ଡ ପୁରି ଖାଇ ସେ ପଳାଇଗଲା । ପରେ ତା'ର ଅନ୍ୟ ଭୋକିଲା ବନ୍ଧୁବାନ୍ଧବୀମାନେ ସେଠି ଆସି ଗଦା ହୋଇଗଲେ ।

ମୁଁ ଜଣେ କୁକୁର ବ୍ୟାଧିଗ୍ରସ୍ତ ବଦରାଗୀ ରୋଗୀ ବୋଲି କେବଳ ଦୟାର ପାତ୍ର ନଥିଲି, ବେଳେବେଳେ କଡ଼ାକଡ଼ା ଅନୁଶାସନ ଓ ମତେ ଚିଡ଼େଇଲା ଭଳି ଯୋଗାଡ଼ କରାଯାଇଥିବା ଷଡ଼ଯନ୍ତ୍ରର ଶିକାର ହେଇ କିଛି କିଛି ଯନ୍ତ୍ରଣା ବି ଆମଦାନି କରୁଥିଲି । ମୁଁ କେବେ କୌଣସି କୁକୁରକୁ ଛୁଆବେଳୁ ଆଣି ପାଳି, ପୋଷି, ମଣ କରାଇ ନିଜର କୁକୁର କରି ରଖି ନଥିଲି । ଯେକୌଣସି ବୁଲା କୁକୁର ମୋ ପାଖରେ ଆସି ଜୁଟୁଥିଲେ । ଅବଶ୍ୟ ସେମାନଙ୍କର ମୋର ହେବା ପଛରେ ମୋର କିଛିଟା କିମିଆ ଥିଲା । ସେମାନଙ୍କ ଭିତରୁ ଜଣେ ଜଣେ ବି ଆମଘରେ ଅତ୍ୟାଚାର କରୁଥିଲେ । ସେଥିଲାଗି ଆମ୍ଭ ଘରେ ଶ୍ରୀମତୀ ଓ ମୋ ଭିତରେ ବେଳେବେଳେ ପ୍ରବଳ ବାକ୍‌ଯୁଦ୍ଧ ହେଉନଥିଲା, ଆମ ଆନ୍ତରିକତାରେ ବି ଆଞ୍ଚ ଆସିଯାଉଥିଲା । ମନେପଡୁଛି । ଗୋଟାଏ କୁକୁରର ଚରିତ ଏମନ୍ତ ଥିଲା । ଥରେ ଗୋଟାଏ କୁକୁରକୁ ଆମ ଦାଣ୍ଡ ପିଣ୍ଡାରେ ମୁଁ ଆବିଷ୍କାର କଲି । ଦେହରେ ପ୍ରାୟ.ରୁମ ନାହିଁ । ଚାରିଆଡ଼େ ମେଞ୍ଚା ମେଞ୍ଚା ଲାଲ୍ ଲାଲ ଘାଆ । ଆଖି କଡ଼ରେ ଶୁଖିଲା ଲେଞ୍ଚରା ହିଡ଼ । ଅଶକ୍ତ ଅବସ୍ଥାରେ ଆସି ପଡ଼ିଯାଇଥିଲା । ପ୍ରଥମେ ତା'ର ଅଶୁଭ ଆବିର୍ଭାବ ଶ୍ରୀମତୀଙ୍କ

ଆଖିରେ ପଡ଼ିଲା । କୁକୁରଟାକୁ କେମିତି ବିଦା କରିବାକୁ ହେବ, ସେଥିଲାଗି ସେ ବ୍ୟସ୍ତ ହୋଇଉଠିଲେ । ସେ ଉଠୁନାହିଁ । ତାକୁ ମାରିବାକୁ ଇଏ ଡରୁଛନ୍ତି । କିନ୍ତୁ ତାକୁ ପିଣ୍ଡାରୁ ଉଠେଇବା ଏକ ଏକାନ୍ତ ଆବଶ୍ୟକତା ବୋଲି ସେ ତୀବ୍ରଭାବରେ ଅନୁଭବ କରୁଛନ୍ତି । ମୁଁ ଆସିଲି । ତା'ପରେ ତା' ଘାଆ ଶୁଖାଇ ତାକୁ ସଂପୂର୍ଣ୍ଣ ସକ୍ଷମ କରିବାକୁ ମତେ ପ୍ରାୟ ଏକମାସ ଲାଗିଲା । ତା'ପରେ ସବୁଥର ପରି କୁକୁରଟା ମୋର ବୋଲି ସମସ୍ତେ ଜାଣିଲେ, ସେ ଖାଇଲା, ରହିଲା । ମୋ ପିଛା ଧରିଲା । କିନ୍ତୁ ମୋର ମାଲିକାନାକୁ ସ୍ୱୀକାର କରି ମୋର ତଥାକଥିତ ରହିଥିବା କୁକୁରଟିର ଗୋଟିଏ ବଡ଼ "କିନ୍ତୁ" ଦୋଷ ଥିଲା । ଯଥା, ସେ ସାମାନ୍ୟ ସୁବିଧା ପାଇଲେ ନିର୍ବିଚାରରେ ଘରେ ପଶି ନିର୍ବିକାର ଭାବରେ ଯାହା ପାଇଲା, ଖାଇ ଯାଉଥିଲା । ତା'ର ଏ ପ୍ରକାରର ବଦପ୍ରକୃତି ପାଇଁ ଶ୍ରୀମତୀଙ୍କ ଉତ୍ତାପ ଆସ୍ତେ ଆସ୍ତେ ଉପରକୁ ଉଠୁଥିଲା । ମୋ ଅନୁପସ୍ଥିତିରେ ତା' ଉପରେ ନିର୍ଘୁମ୍ ପାହାର ହେଉଥିଲା । ସେ ଯେଉଁଦିନ ତାର ପ୍ରକୃତିଗତ କୀର୍ତ୍ତି ଅର୍ଜି ଦେଉଥିଲା, ସେଦିନ ମୁଁ ଘରେ ପହଞ୍ଚିଲାମାତ୍ରେ ମୋ ଉପରେ କଡ଼ାମିଠା କିସମ କିସମ ଥଟ୍ଟା, ଟିଟିକାରୀ, ଶୋଧନା ବର୍ଷି ଯାଉଥିଲା । ଦିନେ ଦିନେ ସେ ଘରେ ପଶୁଥିଲା ଓ ମାଲିକିଆଣୀଙ୍କ ମାଡ଼ ପ୍ରଚେଷ୍ଟାକୁ ଫାଙ୍କି ଦେଇ ଖସି ଯାଉଥିଲା । ମାରି ନ ପାରିବା ଅବଶୋଷର ପ୍ରକ୍ରିୟାରେ ବିବେକ ହରାଇ ସେଦିନ ଶ୍ରୀମତୀ ପ୍ରାୟ ମୋ ଉପରେ ମାର୍ ମାର୍ ହୋଇଉଠୁଥିଲେ । ଦିନେ ଦିନେ ସେ ହାଣ୍ଡି ମାରା କରି ଦେଉଥିଲା ଏବଂ ଉତ୍ତେଜିତ ଉଚ୍ଚବାଚ ଭିତରେ ସେ ଦିନମାନଙ୍କ ମଧ୍ୟରୁ ଦିନେ ଦିନେ ରୋଷେଇ ବନ୍ଦ ବି ହୋଇଯାଉଥିଲା । ତାଙ୍କ ତରଫରୁ କୁକୁରକୁ ଅବଶ୍ୟ ନିକାଲି ଦେବାକୁ ଯେମିତି ନିଶ୍ଚିତ ଦାବି ଉପସ୍ଥାପିତ ହେଉଥିଲା, ମୋର କୁକୁରକୁ ଅଲବତ ରଖିବାର ଜିଦ୍ ସେତିକି ବଢ଼ି ଉଠୁଥିଲା । ମୋର ଯୁକ୍ତି ଥିଲା, ଛୁଆପିଲା ତ ଅବାଧ୍ୟ ହୋଇ ବହୁତ ବହୁତ ଭୁଲଭଟକା କରିପକାଉଛନ୍ତି, ତାଙ୍କୁ ତ ଆମେ ଘରୁ ତଡ଼ି ଦେଉନାହାନ୍ତି । ଛୁଆଙ୍କ ସ୍ଥାନକୁ କୁକୁର ସ୍ତରକୁ ଓହ୍ଲେଇ ଦେଉଛି ବୋଲି ମାଆ ମହାଶୟାଙ୍କ ବରଦାସ୍ତ କରିବାର ସୀମା ପାର ହୋଇଯାଇଥିଲା, ପରନ୍ତୁ ଛୁଆମାନେ ଅପମାନବୋଧରେ ଉତ୍ୟକ୍ତ ହୋଇ ସଂପୂର୍ଣ୍ଣରୂପେ ମାଆଙ୍କ ଦଳଭୁକ୍ତ ହୋଇଯାଇଥିଲେ । ଏଣିକି ବିନା ଅପରାଧରେ ବି କୁକୁରଟା ଉପରେ ମାଡ଼ ବସିଲା । ତାକୁ ଥରେ ଥରେ ଅଭିମାନରେ ନେଇ ଦୂରେଇ ଛାଡ଼ି ଦେଇ ଆସିଥିଲି । କିନ୍ତୁ ସେ ପଳାଇ ଆସୁଥିଲା । ଦିନେ ଆସି ଦେଖିଲି ଘର ଥଣ୍ଡା ପଡ଼ିଯାଇଛି । ସମସ୍ତଙ୍କ ମୁହଁରେ ମୁରୁକୁନ୍ଦିଆ ହସ । ଖାଇବାବେଳେ ଯେତେ ଡାକିଲେ ବି କୁକୁର ଆସିଲା ନାହିଁ । କୂଅମୂଳେ ପାଣି କାଢ଼ିବି ବୋଲି ଦଉଡ଼ି ନାହିଁ । ସାନ ଛୁଆଟାଠାରୁ ଖବର ସଂଗ୍ରହ କଲି ଯେ ଜଣକୁ ପଇସା ଦିଆଯାଇ କୁକୁରକୁ ଡଙ୍ଗାରେ ନଈ ପାର କରାଇ ସେପାରରେ ଛାଡ଼ି ଦିଆଯାଇଛି । କୂଅ ଦଉଡ଼ିରେ ବାନ୍ଧି କୁକୁରଟାକୁ ସେ ନେଇଯାଇଛି ।

ହଁ ମୋର ସେନାପତି ପ୍ରସଙ୍ଗକୁ ଫେରିଆସେ । ଆଗରୁ ତା' ଚେହେରା ଦେଖି ତା' ଅଭାବ ମୁଁ ଅନୁଭବ କରୁଥିଲି । ସେଦିନ ତା' ବିପ୍ଲବର ପ୍ରତିକ୍ରିୟା ଦେଖି ତାକୁ ପାଇବାକୁ

ବ୍ୟସ୍ତ ହୋଇ ପଡ଼ିଲି । ତା'ପରେ ତାକୁ ଖାଇବାକୁ ଦେଇ ଦୂରକୁ ହଟିଯାଇ ତାକୁ ଖାଇବାକୁ ସୁଯୋଗ ଦେଲି । ଆସ୍ତେ ଆସ୍ତେ ପାଖକୁ ଆଣି ଖାଇବାକୁ ଚେଷ୍ଟା ଚଳେଇଲି । ମାଂସ ଆଣି ତାକୁ ହାତରେ ଖୁଆଇଲି । ମାରଓ୍ୱାଡ଼ି ବଗିଚା ଛାଡ଼ି ସେ ଥରେ ରାତିରେ ମୋ ପାଖକୁ ଆସିଲା । ସେ ବାବୁ ଆସି ମୋ ଉପରେ ତୁମ୍ବି-ତୋଫାନ ହେଲେ । ତାଙ୍କ କୁକୁର, ସେ ଅଟକାଇ ରଖନ୍ତୁ, ବୋଲି ମୁଁ ଅନୁରୋଧ କଲି । ସେଦିନ ରାତିରେ ସେ ତାକୁ ବାନ୍ଧିକରି ରଖିଲେ । ପାଚେରୀ ସେପାଖରୁ ତା' ବିକଳ ଚିତ୍କାର ମୋ କାନରେ ବାଜୁଥାଏ । ରାତି ଅଧରେ ମୋ କବାଟରେ ଆମ୍ପୁଡ଼ିବାର ଶବ୍ଦ ହେଲା । ମୁଁ କବାଟ ଖୋଲିଲି । 'ସେନାପତି' ଘର ଭିତରକୁ ପଶି ଆସି ମୋ ଗୋଡ଼କୁ ଚାଟି ପକାଇଲା । ତା'ପରେ ମାରଓ୍ୱାଡ଼ି ବାବୁ, ମତେ ଶୁଣେଇ ଶୁଣେଇ ମଧୁର ମଧୁର ଶୋଧନା ଦେଇ କୁକୁରର ମାୟା ଛାଡ଼ିଦେଲେ । 'ସେନାପତି' ମୋର ସେନାପତି ହୋଇ ସବୁଦିନେ ରହିଲା ।

ଖରାଦିନେ ଅଗଣାରେ ଦିନେ ଦିନେ 'ସେନାପତି' ଉପରେ ମୁଣ୍ଡଦେଇ ଶୋଇ ଖୋଲା ଆକାଶର ଚହଲା ଜହ୍ନକୁ ଚାହିଁ ଚାହିଁ ମୁଁ ତା' କଥା ଭାବେ । କେଡ଼େ ସ୍ୱାଧୀନ ଓ ସ୍ୱଚ୍ଛନ୍ଦ ଜୀବନ ତା'ର । ଯିଏ ତାକୁ ସ୍ନେହ କରୁଛି, ସେ ତାକୁ ଭଲ ପାଉଛି । ଯିଏ ତାକୁ ବେଖାତିର କରୁଛି, ସେ ତାକୁ ଖାତିର କରୁନି । ଯିଏ ଯୁଦ୍ଧ ଚାହୁଁଛି, ସେ ଯୁଦ୍ଧ କରୁଛି । ଯିଏ ଅତ୍ୟାଚାର କରୁଛି, ସେ ପ୍ରତିଶୋଧ ନେଉଛି । କେତେ ସ୍ୱାଭାବିକ ଓ ମୁକ୍ତ ତା'ର ଜୀବନଯାତ୍ରା ! ଛନ୍ଦ ନାହିଁ । ଛଳନା ନାହିଁ । ନିଷ୍କପଟ, ନିର୍ଭୟ, ଭିତର, ବାହାର ସବୁ ଏକାକାର । ଆଉ ମୁଁ ? ମୁଁ ମଣିଷ । ଭିତରର ମୁଁ ବାହାରର ମୁଁ ନୁହେଁ । ଭିତରର ମୁଁ ଉପରେ ବାହାରର ଅନ୍ୟ ଏକ ଖୋଳପା । ତା' ଉପରେ ମୁଣ୍ଡ ରଖି ମୁଁ ଭାବୁ ଭାବୁ ମୋ ଭିତରର ନିଜର ମଣିଷଟି ମୋ' ଉପରର ଅସହାୟ ପରିସ୍ଥିତିର ମଣିଷଟିକୁ ଗୋଇଠା ମାରି ନିକାଲି ଦିଏ । ମୁଁ ତାକୁ କୁଣ୍ଢାଇ ଧରି ଅନୁଭବ କରେ ଦୁନିଆରେ ତା'ପରି ମୁଁ ନିଜକୁ ନିଜେ ବୋଲି ଜାହିର କରିଛି ।

ମୋର ମନେପଡ଼ିଯାଏ । ମୁଁ ଅଫିସ ଗଲାବେଳେ ମୋ' ସାଙ୍ଗରେ ସେ ସେଠିକି ଯାଏ । ସେ ଯାଇଁ ମୋ ଅଫିସ ଟେବୁଲ ପାଖରେ ପ୍ରଥମେ ପ୍ରଥମେ ଶୋଇ ରହୁଥିଲା । ଅନ୍ୟମାନେ ଅଭିଯୋଗ ଆଣିବାରୁ ମୁଁ ତାକୁ ବାହାରେ ଅପେକ୍ଷା କରିବାକୁ ନିର୍ଦ୍ଦେଶ ଦେଲି । ପ୍ରଥମେ ଅମାନିଆ ହେଉଥିଲେ ବି ମୋ କଥା ମାନି ବାହାରେ ସବୁଦିନେ ରହିଲା । ଥରକର କଥା । ଦିନେ ମୋର ଉପର ହାକିମ ମୋ ଉପରେ ଅଯଥା ରାଗିଯାଇ ମତେ ତାଙ୍କର ଫାଇଲ ଫୋପାଡ଼ିଲେ । ମୋ ଭିତରେ ସମ୍ଭ୍ରାନ୍ତ ସଚେତନ ମଣିଷଟି ବାହାରକୁ ଛୁଟିଆସି ତାଙ୍କର ଅନ୍ୟାୟ ଆଚରଣ ବିରୁଦ୍ଧରେ ପ୍ରତିବାଦ କରିବାକୁ ବାରମ୍ବାର କଡ଼ ଲେଉଟାଉଥିଲେ ବି ମୁଁ ତାକୁ ଆସିବାକୁ ଦେଇପାରୁନଥିଲି । ଏହି ଭିତର ଓ ବାହାରର ଯୁଦ୍ଧ ଫଳରେ ପିଚିକି ଉଠୁଥିବା ରକ୍ତସବୁ ମୋ ଆଖିବାଟେ ପାଣିହୋଇ ଖସିପଡ଼ିଥିଲା । ମୋ କୋଠରିରେ ରାଗତମର ପାଟିଶୁଣି ହଠାତ୍ ସେନାପତି ସେଠାକୁ ଧାଇଁଗଲା ଏବଂ ଖୁବ୍ ଜୋର୍‌ରେ ଗର୍ଜିବାକୁ ଲାଗିଲା ।

ତା' ସ୍ୱଚ୍ଛନ୍ଦତାର ସ୍ୱର ଶୁଣି ମୋର ଆତ୍ମପ୍ରତୀତି ମତେ ଉଜ୍ଜିବୀତ କରିଦେଲା । ମୁଁ ମୋ ବସ୍‌ଙ୍କ ଅଯଥା ଦୋଷାରୋପ ବିରୁଦ୍ଧରେ ମୋର ସ୍ୱାଧୀନ ମନ୍ତବ୍ୟ ସେଦିନ ନିବଙ୍କାରରେ ଦେବାକୁ ଟିକିଏ ବି ଦ୍ୱିଧାବୋଧ କରିନଥିଲି ।

ମୋ ବସାଠୁଁ ଚାରିପାଞ୍ଚ ଘର ଛାଡ଼ି ଜଣେ ଅବସରପ୍ରାପ୍ତ ଅତି ଉଚ୍ଚପାହିଆ ଅଫିସରଙ୍କର କୋଠି ଥିଲା । ଆଭିଜାତ୍ୟର ସମସ୍ତ ସନ୍ତକ ଧରି ଦୋତାଲା ଘର,ଲନ୍, ଫୁଲବଗିଚା, ପାଚେରୀ, ଗ୍ରୀଲଗେଟ ସବୁ ଥିଲା । ଆଉ ଆଲେସେସିଆନ କୁକୁର ମଧ୍ୟ ଥିଲା । ଭଦ୍ରଲୋକ ନିଜର ଆଭିଜାତ୍ୟର ବୃତ୍ତ ଭିତରେ ନିଜକୁ ବନ୍ଦୀ କରି ନିଜର ସମ୍ଭ୍ରମତା ରକ୍ଷା କରୁଥିଲେ । ଲମ୍ବା ଚାକିରି ଜୀବନର ବହୁ ଅଭ୍ୟସ୍ତ, ନିଜର ସ୍ୱତନ୍ତ୍ରଭାବ୍ ତାଙ୍କୁ ସାଧାରଣଙ୍କ ସାଙ୍ଗକୁ ଓହ୍ଲେଇ ଦେଇପାରୁ ନଥିଲା । ସମସ୍ତଙ୍କ ସାଙ୍ଗରେ ଜଣେ ହୋଇଯିବାର ଚିନ୍ତା ତାଙ୍କ ପାଇଁ ଦୁର୍ବିସହ ଥିଲା । ଏପରି ନିଃସଙ୍ଗତାକୁ ସେ ଉଚ୍ଚ ସମ୍ମାନବୋଧରେଁ ଫାଙ୍କା ଦେଉଥିଲେ ।

ହଁ, ତାଙ୍କର ଆଲେସେସିଆନ କୁକୁର ଥିଲା । କିନ୍ତୁ ସେଟା ମାଈ ଥିଲା । ତାଙ୍କ ପରି ତାଙ୍କର କୁକୁରୀର ଆଭିଜାତ୍ୟକୁ ବଜାଏ ରଖିବାକୁ ସେ ମଧ୍ୟ ସଜାଗ ଥିଲେ । କୁକୁରୀ ସବୁବେଳେ ତାଙ୍କ ଚୌହଦୀ ଭିତରେ ରହୁଥିଲା । ବାହାରକୁ ବୁଲିଆସିଲେ ସାଙ୍ଗରେ ତା'ର ପରିଚାରକ ଥିଲା । ଅନ୍ୟ କୁକୁର ତାକୁ ଦେଖି ଭୁକିଦେଲେ, ଏହା ଏକ ନିକୃଷ୍ଟ ଅଶିଷ୍ଟତା ଓ ଧର୍ତ୍ତବ୍ୟ ଅପରାଧ ବୋଲି ବିଚରା ଭୁକାଳିଙ୍କ ଉପରେ ଦଣ୍ଡ ବିଧାନର ବ୍ୟବସ୍ଥା କରାଯାଉଥିଲା । ତାଙ୍କ କୁକୁରୀକୁ ସେମାନେ 'କ୍ୱିନ୍' ବୋଲି ଡାକୁଥିଲେ ।

ସେନାପତି ବେଳେ ବେଳେ ଅଫିସର ସାହେବଙ୍କ ଗେଟ୍ ଆଗରେ ପଇଁତରା ମାରିଦେଇ ଆସୁଥିଲା । ତାକୁ ଦେଖି ମହଲର କ୍ୱିନ୍ କୁଉଁ କୁଉଁ ହେଇ ତା' ବନ୍ଧା ଜଞ୍ଜିରରୁ ଆଗକୁ ଟାଣିହୋଇ ଆସୁଥିଲା । ତା'ପରେ ଅଫିସରଙ୍କ ପ୍ରାସାଦରୁ ମୋଟା ଟାଣୁଆ ଗଳାରେ ଘୃଣାରଂଜିତ ଆକ୍ଷେପୋକ୍ତି ଛୁଟି ଆସୁଥିଲା । କୁକୁରଟା ନୀଚ ଶ୍ରେଣୀର, ଦେଶୀ ବଂଶଜ, କୁତ୍ସିତ, କଦାକାର ଓ ତାକୁ ରଖିଲାବାଲା ବି ସେଇ ସ୍ୱାଦର ମଣିଷ, ଇତ୍ୟାଦି, ଇତ୍ୟାଦି । 'ସେନାପତି' ତାଙ୍କ ଗେଟ୍ ଆଗରେ ବୁଲୁଥିବା ମୋ ନଜରରେ ପଡ଼ିଲେ, ମୁଁ ତାକୁ ଡାକି ପାଖକୁ ନେଇ ଆସୁଥିଲି ।

ତାପରେ ଦିନେ । ସେମାନଙ୍କ ଦେହ କ୍ଷୁଧାର ଉନ୍ମତ୍ତ ଋତୁର ଗୋଟାଏ ବହଳିଆ ଖରାନଚା ନିଛାଟିଆ ଦିପହରରେ । ଗୋଟାଏ ଜାଗାରେ ଅଳ୍ପ ଭାଙ୍ଗିପଡ଼ିଥିବା ପାଚେରୀକୁ କୁଦି 'ସେନାପତି' ସାହେବଙ୍କ ହତା ଭିତରକୁ ଲମ୍ଫ ମାରିଛି । କ୍ୱିନ୍ ସେତେବେଳେ ଖୋଲାହୋଇ ବଗିଚାରେ ବୁଲୁଥିଲା । ସାହେବଙ୍କ ପରିବାରର ସମସ୍ତେ ଖାଇବା ପରେ ବିଶ୍ରାମ ନେଇ ଶୋଇ ପଡ଼ିଥିଲେ । 'ସେନାପତି' 'କ୍ୱିନ୍'କୁ ଅଚାନକ କାବୁକରି ରାକ୍ଷସ ପରି ନିଜ ଦେହର ଭୋକକୁ ମେଣ୍ଟାଇ ନେଇଛି । 'କ୍ୱିନ୍' ବାଧା ଦେଇନି । ରତିକ୍ଳାନ୍ତ ଅବଶ ଅବସ୍ଥାରେ

ସେନାପତି ଧରା ପଡ଼ିଛି । ଗୋଟାଏ ଶାବଳର ନିର୍ଘାତ ପାହାର ଖାଇ ରକ୍ତ ସୁଡୁବୁଡୁ ହେଇ ମୋ ପାଖକୁ ଶେଷଥର ପାଇଁ ଦୌଡ଼ି ଆସିଛି ।

ସେନାପତି ପଡ଼ିଥିଲା । ଶାବଳ ମାଡ଼ରେ ତା' ମୁଣ୍ଡଟା ଫାଟି ଦି'ଫାଳ ହେଇଯାଇଥିଲା । ମୁଁ ତା' ପାଖରେ ବସି ତା' ମୁଣ୍ଡରୁ ଚଳାଚଳା ରକ୍ତ ପୋଛି ତଳକୁ ଛାଟୁଥିଲି ।

ଅନେକ ଅନେକ ଦିନ ତଳେ ସେଇମିତି ଗୋଟେ ପାଚିରୀଘେରା ଦୁର୍ଗର କଥା ମୋର ମନେପଡୁଥିଲା । ସେହି ଆଭିଜାତ୍ୟର କୋଠା । ତା' ଭିତରେ ସେହିପରି ବନ୍ଦିନୀ ଏକ ଆଭିଜାତ ସୁନ୍ଦରୀ । ଅବିକଳ ମୋର ସେହି ଆକାଂକ୍ଷା । ସେହିଭଳି ରୂପସୀର ଆଖିରେ ନିମନ୍ତ୍ରଣର ଆହ୍ୱାନ । ମୋର ସାହାସ ନଥିଲା । ମୁଁ ମୋର ଅସହାୟତା, ଆତ୍ମଶ୍ଲାଘା ହୀନମନ୍ୟତା ନେଇ ଫେରି ଆସିଥିଲି ।

ମୁଁ ସେନାପତିକୁ ଦେଖୁଥିଲି । ତା' ରକ୍ତକୁ ଦେଖୁଥିଲି । ମୁଁ ତାକୁ କୁଣ୍ଢେଇ ଧରି ତା' ଉପରେ ଶୋଇପଡ଼ିଲି । ମୁଁ ଆସ୍ତେ ଆସ୍ତେ ସେନାପତିର ପ୍ରାଣ ଭିତରେ ନିଜେ ମିଳେଇଗଲି ।

ମୁଁ ଦେଖୁଥିଲି । ମୁଁ ସେ ଦୁର୍ଗର ପ୍ରାଚୀରକୁ ଲମ୍ଫମାରି ଦୁର୍ଗ ଭିତରେ ଧସେଇ ପଶିଲି । ସେ ବନ୍ଦିନୀ ବନ୍ଦିତା ରାଜକନ୍ୟାକୁ ନେଇ ମୋର କେବଳ ଥିଲା ଆଶ୍ଲେଷ, ଆବେଗ, ପେଷଣ, ନିଷ୍ପେଷଣ । ତା'ପରେ ମୁଣ୍ଡ ଉପରେ ଶାବଳର ପ୍ରବଳ ପ୍ରହାର ବାଜିଲା ।

ମୁଁ ଚମକିପଡ଼ି 'ସେନାପତି'ର ଦେହ ଉପରୁ ମୁଣ୍ଡ ଟେକିଲି । ମୋ ତାଳୁରୁ ଥୋଳା ଥୋଳା ରକ୍ତ ତଳକୁ ଥୋପି ଥୋପି ପଡୁଥିଲା ।

•••

# ଏକ ବୃତ୍ତାନ୍ତ, ଦେହ ଓ ମନର

ଏବେ ହେଉ କି କେବେ ହେଉ । ଏକଦା ହେଉ କି ଅଧୁନା ହେଉ । କେବେ କେବେ ଏକଦା ଏବେ ହେଇ ଫେରିଆସେ । କେତେକ ଏକଦା ବି ଯାବତ୍ ଚନ୍ଦ୍ରାର୍କେ ଏବେ ହେଇ ହେଇ ଚାଲେ । ସେ ଯାହାହେଉ, ମୁଁ ଯେଉଁ କଥାଟା କହିବି, ତାହା ଅବଶ୍ୟ ସମୟ ପାଞ୍ଜିର 'ଏକଦା'ର କଥା ।

ଏକଦା ଜଣେ ଥିଲା । ସମସ୍ତଙ୍କର କିଛିନା କିଛି ଗୋଟାଏ ନାଆଁ ଥାଏ । ପୃଥିବୀର ଏ ମୁଣ୍ଡରୁ ସେ ମୁଣ୍ଡଯାଏଁ ଅଣ୍ଡାଳିଲେ, ଯାହା ହାତରେ ପଡ଼ିବ, ସେ ଗୋଟେ ନାଆଁର ମାଲିକ । ଧରାଯାଉ, ସେ ଜଣଙ୍କର ନାଆଁଥିଲା 'ପୁରୁଷ' । ଆଉ ଯେଉଁ ଜଣକୁ ନେଇ ଯେଉଁସବୁ ଘଟଣା ଅଘଟଣ ଘଟିଥିଲା, ତା ନାଆଁ ମୁଁ ଆଗତୁରା କହିଦେଉଛି, (କାଳେ ମନେ ପଡ଼ିବ କି ନାହିଁ), ତା ନାଆଁ ଥିଲା 'ନାରୀ' ।

ହଁ, କଥାରେ କହିଲା ଭଳି-'ପୁରୁଷ' ଥିଲା ସଲଖ ସୁନ୍ଦର ଭେଣ୍ଡିଆଟିଏ, ଏକ ହଟାକଟା ଜୁଆ ମର୍ଦ୍ଦ । ଦେହରେ ତା'ର ବୟସର ବଢ଼ି କୂଳ ଖାଉଥିଲା । ମନରେ ତା'ର ବାସନାର ବତାଶ ଡାଳ ଭାଙ୍ଗୁଥିଲା । କଞ୍ଚା ମାଂସର ଭୋକ ତା ଉପରେ ଅଥାର ହେଇ, ତାକୁ ଅଧିକାଂଶ ବେଳେ ଅଥୟ କରି ପକାଉଥିଲା । 'ପୁରୁଷ' ଥିଲା ଏଇମିତି ଏକ ଦେହ ସର୍ବସ୍ୱ ମଣିଷ ।

ସେ ବହୁତ ଯୋଗାଡ଼ଯନ୍ତ୍ର କରି ତା ମନକୁ ମନାଇଲା ଭଳି ଜଣକୁ ପାଇ ପାରିଲା । (ମୁଁ ଆଗରୁ ତା ନାଆଁ କହିଛି, ତଥାପି ମନେ ପକାଇ ଦେଉଛି) ଧରାଯାଉ, ତା ନାଆଁଥିଲା 'ନାରୀ' । 'ନାରୀ' ଥିଲା ଏକ ରୂପର ବାରୁଆଳି । ତା ଦେହସାରା, ଏଠିସେଠି, ଜାଗାଜାଗା, ଜଗିଜଗି, ଝଙ୍କା ହେଇଥିଲା ଯୌବନର ଜଂବୁରା ଓ ସେଥିରେ ଥିଲା ମାପଜୁପ କରା ବୟସର କୂଚିକମ । ହସ ଓଲଟୁଥିବା ଲାଲ ଲାଲ ଲାଜଲିପା ଓଠରେ ତା'ର ଥିଲା ଚାଖିବାକୁ, ଚଖାଇବାକୁ ଚପାଚପା ଡାକରା । ଢାଙ୍କି ଢାଙ୍କି ହୋଇ ପଡୁଥିବା ପହଁରିଲା ଟଣାଟଣା ଆଖିରେ ଥିଲା "ଆସ ଆସ"ର ଇସାରା । ଦେହରେ ଦେବାର ହାଇମିଶା ଆଳସ୍ୟ । ମନରେ ନେବାର ସ୍ୱପ୍ନଫେଣ୍ଟା ଆବେଶର ନିଶା । 'ପୁରୁଷ'ର ଦହୁଡ଼ା ସ୍ନାୟୁରେ 'ନାରୀ'ର କାବ୍ୟିକ ରୂପ ବିଭବକୁ ଅନୁଭବ କରିବାକୁ ଟିକିଏ ବି ପ୍ରବଣତା ନଥିଲା । 'ନାରୀ'ର ଦେହରୁ କଳାତ୍ମକ ଶ୍ରୀଟିକୁ ବାଦଦେଇ ଉପରେ ଅଙ୍କା ହେଇଥିବା ଦେହର ଭୂଗୋଳକୁ ଦେଖି ମନେମନେ ଭାରି ମସଗୁଲ ହୋଇ ଯାଇଥିଲା ।

ସେ ଦୁଇଜଣ ବିବାହବେଦୀରେ 'ତ୍ରୟୀ ଓ ତ୍ରିଦେବ' ହେବାକୁ ବେଦ ମନ୍ତ୍ରର ଶପଥ ନେଇ କାୟ, ମନ, ବାକ୍ୟରେ ଏକ ହେବାକୁ ହାତ ଉପରେ ହାତ ରଖିଥିଲେ । ସେମାନେ ଏକାତ୍ମା ବୋଲି ଦୁନିଆ ଆଗରେ ବାନାବଇରଖ ଉଡ଼ାଇଲେ । ସମସ୍ତେ ଜାଣିବାରେ ସେମାନେ ଏକପ୍ରାଣର ଦି ପ୍ରାଣୀ ଥିଲେ ।

ପରେ ଇଚ୍ଛା ଓ ଅନିଚ୍ଛା ଭିତରେ ସେମାନେ ଦେହରେ ଏକ ହେଇ ପାରିଥିଲେ । କିନ୍ତୁ ଜୀବନଯାକ ପ୍ରାଣରେ କେବେ ଏକ ହେଇ ପାରିଲେ ନାହିଁ । ଦେହମଦୋତି ପତିଦେବତା ଦେହ କାରବାରକୁ ବିବାହ ବିଧିର ପ୍ରାୟ ସବୁ ଧାରା, ଉପଧାରା ବୋଲି ଧରିନେଇଥିଲେ । ସ୍ୱାମୀର ଅଧିକାର ନେଇ ଜବରଦସ୍ତ ସ୍ତ୍ରୀର ଦେହକୁ ଅକ୍ତିଆର କରି ସ୍ୱାମୀର ଅହଂ ଓ ପୁରୁଷକାରକୁ ଯଥୋଚିତ ଯୁକ୍ତି ଦେଇଛନ୍ତି ବୋଲି, ଖୁବ୍ ଖୁବ୍ ଗର୍ବ ଅନୁଭବ କରୁଥିଲେ ।

ଆଉ ମନ କୁଂଜର ଫୁଲଦୋଳିକୁ ଆସିଥିବା ମନର ମଣିଷଟିକୁ ପଞ୍ଝେଇ ପଞ୍ଝେଇ କେତେ ରୋମାଞ୍ଚକର ପାଞ୍ଚ ପାଞ୍ଚି, ବଞ୍ଚିବାର ମହୁ ପିଇବାକୁ 'ନାରୀ' ନାଗରୀଟି ପତ୍ନୀ ହେଇ ଆସିଥିଲା । କିନ୍ତୁ ନାଗରବର 'ପୁରୁଷ'ଙ୍କର ତା ଦେହ ଡେଇଁ ତା ମନରେ ପହଞ୍ଚିବାକୁ ରୁଚି କିମ୍ବା ଫୁରୁସତ୍ ନଥିଲା । ମନ ମନାକଲେବି ଜଣେ ମାଂସାଶୀ ମଣିଷକୁ ନିଜର ଭରପୁର ଦେହକୁ ଭୁଂଜାଇ ସେ ଗୋଟାଏ ଦେହ ସାମଗ୍ରୀ ହେଇ ରହିବାକୁ ବାଧ୍ୟ ହେଉଥିଲା ।

ସେ ମନକୁ ମାଡ଼ିବସି, ଦେହର ମଣିଷ ହେଇ କେତେଦିନ ବଞ୍ଚନ୍ତା ? ବେଳେ ବେଳେ ତା ମନ ଦେହକୁ ଓହ୍ଲାଇ ଆସି ପୁଣି ଫେରି ଯାଉଥିଲା । କେତେଦିନ ସ୍ତ୍ରୀ ନାମକ ଶବଟିଏ ହେଇ ପଡ଼ି ରହିବ ? କେତେକାଳ ସ୍ୱାମୀ ଶାଗୁଣାଟି ଉଦ୍ଭଟ ଆହ୍ଲାଦର ଥୋଳା ହଲାଇ ହଲାଇ ଶବମନ୍ୟ ତା ଶରୀରକୁ ତା ଧାରୁଆ ଚଞ୍ଚୁରେ ଚିରିଚିରି ଚାଲିବ ? ମନର ଅପମାନକୁ କେତେଦିନ ବୋହି ବୋହି ସହି ସହି ଜୀଇବ ? ନଖଦାନ୍ତର ପ୍ରେମ ସମ୍ଭାଷଣକୁ ସମ୍ଭାଳିବାକୁ ଆଉ ସେ ପ୍ରସ୍ତୁତ ନଥିଲା । ଧୋକାର ଧକ୍କା ଖାଇ ଖାଇ ଆକ୍‌ଚା ହେଇ ପଡ଼ିଥିବା ତା ଭିତରର କାକୁସ୍ଥ ନାରୀସତ୍ତାଟି ଭିତର କାତିକୁ ଉତାରି ଦେଇ, ଚୋଟ ମାରିବାକୁ ଫଣା ସଜାଡ଼ି ନେଲା । ସ୍ୱାମୀର ସ୍ୱାର୍ଥର 'ହଁ'କୁ ସ୍ତ୍ରୀର ମର୍ଯ୍ୟାଦାର 'ନା'ରେ ପ୍ରତିରୋଧ କରିବାକୁ ଅଣ୍ଟାରେ ପଣତ ଭିଡ଼ିଦେଲା । ତା'ପରେ 'ହଁ' 'ନା'ର ଯୁଦ୍ଧ ଚାଲିଲା । 'ହଁ'କୁ କେବେ ଅପେକ୍ଷା କରି ଆସିନଥିବା ଅଭ୍ୟାସର 'ପୁରୁଷ' 'ନାରୀ'ର 'ନା'ର ଅଚାନକ ଲାଠି ଉଠାରେ ଉତ୍ୟକ୍ତ ହେବା ଆଗରୁ କେମିତି ଆବାକାବା ହେଇ ଅଟକି ଗଲା । ଶିକାରର ଧମକ ଖାଇ ବାଘ ଯେମିତି ଟିକିଏ ଇତସ୍ତତଃ ହେଇ ଠିଆ ହେଇଯାଏ । ତା'ପରେ ତା'ର ସ୍ୱାମୀ ମହାବଳ ହେଣ୍ଟାଳି ଉଠିଲା । ଗିର୍ଜିଲା ସିନା, ମର୍ଜି ତା'ର ହାରିଗଲା । ଆଗରେ ଶିକାର ନୁହେଁ, ଶିକାରୀ ଠିଆ ହେଇଥିଲା ।

ଏବଂ ବିଧ ପ୍ରତିରୋଧର ପ୍ରତିକ୍ରିୟାର ବିଷ ତା'ର ଅହଂମନ୍ୟ ମନ ଉପରେ ଚକଡ଼ା ଚକଡ଼ା ହେଇ ଫଳି ଫଳି, ମାଡ଼ି ମାଡ଼ି ଚାଲିଲା ।

ତା'ପରେ ତେଣିକି ତେଣିକି । ଛେଳିଛୁଆ ବାଘ ଉପାଖ୍ୟାନର- ତୁ  ପାଣି ନଗୋଳେଇଲେ, ତୋ ବୋପା ଗୋଳେଇଥିଲା- ଢଙ୍ଗରେ ଯାଉଣୁ ଆସୁଣୁ ଟିକିଟିକି କଥାରେ ସ୍ତ୍ରୀ ଉପରେ ବୋଝ ବୋଝ ଦୋଷ ଲଦି ଲଦି ଔଷଧ ରାଗରେ ତାଟିଆ କାମୁଡ଼ିବାକୁ ଲାଗିଲ । ତା'ପରେ ତା ପରେ । ଦୁଇଜଣଯାକ ଫୁଲକା ଉପରେ କଥା ଟୁଙ୍କାଟୁଙ୍କି, ଉଚ୍ଚବାଚର ପଞ୍ଝା ମିଳେଇଲେ । ନଖରେ ଛିଣ୍ଡିବା କଥା ପାଇଁ କଟୁରୀ ଟାଙ୍ଗିଆ ଟେକିଲେ । ଆଜେବାଜେ କଥାର ତଳେ ପଡ଼ିଥିବା ବଲ୍‌କୁ ପିଟିପିଟି ଉପରକୁ ଉପରକୁ ଉଠାଇଲେ ।

ଏମିତିକା ସେ ଦୁଇଜଣଙ୍କ ପିତା ଜୀବନରେ ମିଠା ପାଣିର ଛିଟିକା ଛିଞ୍ଚି, ଆଉ ଜଣେ ସେମାନଙ୍କ ସାଙ୍ଗକୁ ଆସିଲା । ଦିନେ ତାଙ୍କ ଘରର ଆଟୁ ଉପରେ ଦାନ୍ତରଗଡ଼ା, ଗୋଡ଼ାଗୋଡ଼ି, ଗଡ଼ାପଡ଼ାର ଧୁମ୍‌ଧଡ଼ାକ୍ ଚାଲିଲା । ମାଇ ମାଙ୍କଡ଼ଟିଏ ତା କଅଁଳ ଛୁଆକୁ ଧରି ଲୁଚିକି ବସିଥିଲା । ଅଣ୍ଡିରା ଛୁଆଟାକୁ ନିପାତ କରିବା ଦନ୍ତାର ପ୍ରବୃତ୍ତିଗତ ଅଭ୍ୟାସ ଓ ଆବଶ୍ୟକତା । ଆଉ କିଏ ଭବିଷ୍ୟତରେ ଦଳପତି ହେବାକୁ ସେ ପ୍ରଶୟ ଦେଇ ପାରିବନି । ମୂଳୁ ମାଇଲେ ଯିବସରି । ବାଉଁଶ ଥିବ ନା ବଂଶରୀ ବାଜିବ ? ତା ସୁତ, ତା ସୂତ, ତା ସୂତ, ଏମିତିକା ହଜାର ହଜାର ତା ସୂତ ହେଇ ହେଇ ଆମେ ମାଙ୍କଡ଼ର ବଂଶଧର । ମାଙ୍କଡ଼ ପରମ୍ପରାର ଜିନ୍ ଏବେବି ଆମ ଭିତରେ ମହଜୁଦ୍ ରହିଛି । ଅଧିକାରର ଗାଦି ଦଖଲ ପାଇଁ ଆଜିବି ପ୍ରତିଦ୍ୱନ୍ଦୀ ଧ୍ୱଂସର ମାଙ୍କଡ଼ାମି ଧନ୍ଦା ଆମ ଭିତରେ ଚାଲିଛି ।

ଜୀବ ନିର୍ବିଶେଷରେ ମାଆ ଏକ ପିଲା ପାଗଳିନୀ ଜାତି । ସେ କାହ୍ନୁର ଜନନୀ ଯଶୋଦା ହେଉ, କି ଛୁଆ ମାଙ୍କଡ଼ର ମାଆ ହେଉ । ମାଈ ମାଙ୍କଡ଼ଟି ଛୁଆଟିକୁ ବଞ୍ଚାଇବା ପାଇଁ ଦନ୍ତା ସାଙ୍ଗରେ ଜୀବନମୂର୍ଚ୍ଛା ଲଢ଼େଇ କରି ଚାଲିଥିଲା ।

ବିତୃଷ୍ଣା ବିରକ୍ତିର ଜୀବନ ଚୌହଦୀରେ ଅବହେଳା, ଅତ୍ୟାଚାର, ଅସନ୍ତୋଷ, ଆକ୍ଷେପର ପଥର କୁଢ଼ା ହେଇ ହେଇ ପାହାଡ଼ ଠିଆ ହେଲେ ବି ପାହାଡ଼ ପେଟର ସ୍ୱଚ୍ଛ, ଶୀତଳ ଜଳଭଳି ନାରୀର ମନ ଗହୀରରେ ସ୍ନେହ, ସରାଗ, ମୋହ, ମମତାର ଛଳଛଳ କୋମଳତା ଶୋଇ ରହିଥାଏ । ସେଥିରେ ଅନୁଭବର ଟୁକୁଡ଼ା ଖଣ୍ଡେ ଖସି ପଡ଼ିଲେ, ସେଠି ହଲଚଲର ହାବୁକା ଉଠେ । ପାଣି ଲହଡ଼ି ହିଡ଼ର ଗୋଳେଇ ମେଲି ମେଲି ସେଇ କୂଳରେ ବାଜେ । ମାଙ୍କଡ଼ ଛୁଆଟାର ଦୟନୀୟ ମୃତ୍ୟୁକଥା ଭାବି 'ନାରୀ' ବ୍ୟସ୍ତ ହେଇ ପଡ଼ିଲା । ସେ ସ୍ୱାମୀକୁ ଛୋଟ ଛୁଆଟାକୁ ବଞ୍ଚେଇବାକୁ ଅନୁରୋଧ କଲା । ସ୍ତ୍ରୀର ଆଧି ନେଇ ସ୍ୱାମୀ ପାଖରେ ସେ କେବେ ଅଭିମାନ, ଆଦେଶ, ଉପଦେଶ, ଅନୁରୋଧ, ଖୁସାମତି, ଅଳି, ନିଉଛାଳି ପ୍ରଭୃତି କୌଣସି ସ୍ୱାଭାବିକ କ୍ରମରେ କିଛି କରି ନଥିଲା । ଗୋଟାଏ କଅଁଳା ଛୁଆର ଜୀବନ ପାଇଁ ତାର ଆତୁରତା ଅନୁନୟ କରିବା ପାଇଁ ତାକୁ ବାଧ୍ୟ କରିଥିଲା । ସ୍ୱାମୀ ସାଙ୍ଗେ ସାଙ୍ଗେ ଗୋଟାଏ ମୂଳିଆ ଠେଙ୍ଗାଧରି ଆଟୁ ଉପରକୁ ଉଠିଗଲେ । ଏମିତିକା ଯିବା ପଛରେ ସ୍ତ୍ରୀ ସୁହାଗର ପ୍ରଶ୍ନପ୍ରାୟ ନଥିଲା । ମଣିଷପଣିଆଁ ଥିଲା କି ନାହିଁ ସନ୍ଦେହ । ମରଦ ବାହାଦୂରୀ କି ଦେହ ଆଦାୟର ପ୍ରଚ୍ଛନ୍ନ ମତଲବ୍ କଣଥିଲା, ସେ ଜାଣେ । ଦନ୍ତାଟା ଭୁରୁଡ଼ି କାଢ଼ି, ଦାନ୍ତ

ରଗଡ଼ି କାମୁଡ଼ିବାକୁ ମାଡ଼ି ଆସିଲେବି, ନିର୍ଘୁମ୍ ଠେଙ୍ଗା ପାହାର ଖାଇ ପଳାଇଗଲା । ମାଆ ମାଙ୍କଡ଼ଟି ଦନ୍ତାର ଲଗାତର ଥାବା ମାଡ଼ ଓ ବାରମ୍ବାର କାମୁଡ଼ାରେ ରକ୍ତ ସୁଡୁବୁଡୁ ହେଇ ତଳେ ପଡ଼ିପଡ଼ି ଆଖି ବୁଜିଦେଲା । ଡରରେ କାଙ୍କୁରି କୁଙ୍କୁରି ହେଇ ପଡ଼ିଥିବା ଛୁଆଟାକୁ ଧରି ସ୍ୱାମୀ ତଳକୁ ଓହ୍ଲାଇ ଆସିଲା ।

ମାଙ୍କଡ଼ ଛୁଆଟି ତାଙ୍କ ଘରେ ରହିଲା । ରହୁ ରହୁ ସେ 'ନାରୀ'ର ଆପଣାର ହେଇଗଲା । ମାଙ୍କଡ଼ଟାବି ଆସ୍ତେ ଆସ୍ତେ ତାକୁ ଆପଣାଇ ନେଲା । 'ପୁରୁଷ'ତ ଯେତେହେଲେ ଘରର ମାଲିକ । ବଞ୍ଚିବାର ସଂଚା ଯୋଗାଡ଼ ପାଇଁ ତାକୁ କାମଦାମ କରିବାକୁ ହୁଏ । ତେଣୁ ଦିନର ଅଧିକାଂଶ ସମୟତକ ବାହାରେ ବିତାଇବାକୁ ପଡ଼େ । 'ନାରୀ' ଘରଣୀର ସଂଜ୍ଞା ନେଇ ଘରେ ଏକୁଟିଆ ବନ୍ଧାହେଇ ପଡ଼ିଥିଲା । ଘର ପଂଜୁରୀରୁ ଉଡ଼ିଯାଇ ଆଉ କେଉଁଠି ସ୍ୱଚ୍ଛନ୍ଦରେ ବସାବାନ୍ଧିବାକୁ ମନ ଯେତେ ମତାଇଲେ ବି, ଡେଣାକୁ ସେ ଟେକି ପାରୁନଥିଲା । ତାକୁ ଲୋକଲଜ୍ଜା- ଅଠାକାଣ୍ଡିଆର ଅଠା ଅଚଳ କରି ଦେଇଥିଲା ।

ଦିନଦିନ ନୂଆ ନୂଆ ଫାଟୁଥିବା ଫାଟ ଉପରେ କାମଦାମ ଝୁଙ୍କର ପଟି ପକାଇ ଭିତରର ଜଳାପୋଡ଼ାରୁ ନିଜକୁ ମୁକୁଳାଇବାକୁ ସେ ଚେଷ୍ଟା କରୁକରୁ ନିଜକୁ ଅନ୍ୟମନସ୍କ କରି ପକାଉଥିଲା । କେତେବେଳେ ହେମଦସ୍ତାରେ ମସଲା କୁଟୁ କୁଟୁ ଆଙ୍ଗୁଠି ଉପରେ ପାହାର ଠୁକାଇ ଦେଉଥିଲା ତ, କେତେବେଳେ ପରିବା କାଟୁ କାଟୁ ପନିକିରେ ଆଙ୍ଗୁଳି କାଟି ପକାଉଥିଲା । ତାଙ୍କ ଘରକୁ ନୂଆହେଇ ଆସିଥିବାରୁ ସେ ମାଙ୍କଡ଼ର ନାଆଁ 'ନୂଆ' ରଖିଥିଲା । ତାଛଡ଼ା ତା' ଜୀବନଥାକର ଗଡ଼ିପଡ଼ିଲା ଫୁଲଦାନୀରେ 'ନୂଆ' ନୂଆ ନୂଆ, କୁନି କୁନି, ଫୁଲ ପତ୍ର ଗେଂଜି ଗେଂଜି ଦେଉଛି ବୋଲି ସେ ଅନୁଭବ କରୁଥିଲା । 'ନୂଆ'ର ମିଠା ମିଠା ଦୁଷ୍ଟାମିରେ ରୁଷ୍ଟ ହେବାର ଅଭିନୟ କରି ତା ଭିତରର ମରିମରି ଯାଉଥିବା ଅରମାନକୁ ଜୀବନ୍ୟାସ ଦେଉଥିଲା । ପରିବା କାଟୁ କାଟୁ 'ନୂଆ' ବେଳେ ବେଳେ କଟା ପରିବାରୁ ଦିଖଣ୍ଡ ହାପୁଲାମାରି ନେଇ ଯାଉଥିଲା । ମିଛିମିଛିକା ରାଗରେ ତାକୁ ଗୋଡ଼ାଇଲେ, ଟିକିଏ ଦୂରକୁ ସେ ଡିଆଁଟେ ମାରି, ପରିବାଖଣ୍ଡକୁ ଚାକୁଳାଉ ଚାକୁଳାଉ, ଅଳ୍ପ ଟିକିଏ ଦାନ୍ତନିକୁଟି ଦେଇ, ତାକୁ ଚାହିଁକି ରହୁଥିଲା । ସେ ତରତର ହେଇ କାମରେ ଗଲାବେଳେ, ପଛଆଡୁ ତା ଲୁଗାକାନିକୁ ଟାଣିଧରି ତାକୁ ଅଟକାଇ ଦେଉଥିଲା । ପଛକୁ ବୁଲିପଡ଼ି, ବଡ଼ ବଡ଼ ଆଖିକାଢ଼ି, ତାକୁ ଚାହିଁଲେ, ସେ କଡ଼କୁ ବୁଲିପଡ଼ି ମୁହଁ ଲୁଚାଇ ବସି ପଡୁଥିଲା । ଦାଣ୍ଡରେ ସଂଜ ଦେବାକୁ ଗଲାବେଳେ, ସେ ଆଗରେ ଦୌଡ଼ିଯାଇ ଦାଣ୍ଡକବାଟ ଖୋଲି ଦେଉଥିଲା । ସଂଜଦେଇ ମୁହଁ ବୁଲାଇଲେ, ସଂଜକୁ ଫୁଙ୍କି ଲିଭାଇ ଦେଉଥିଲା । ବାଡ଼ିରେ ଫୁଲ ତୋଳିଲାବେଳେ, ଗୋଟେ ଫୁଲ ଛିଣ୍ଡାଇବାକୁ ଯାଇଁ ଡାଳଟେ ଭାଙ୍ଗି ଦେଉଥିଲା । ସେଇ ଭଙ୍ଗା ଡାଳରେ ପ୍ରଥମେ ଜୋର୍‌ରେ ପାହାରଟେ ଆକଟ କରିବାକୁ ବାଡ଼ାଇଲେ, ମୁହଁ କୁଞ୍ଚୁଣ୍ଡାଇ ରୁଷିକି ବସୁଥିଲା । ପୁଣି ସେଇ ଛାଟରେ ଥିରି ଥିରି ଥରେ ଦୁଇଥର ପିଠିରେ ଛୁଆଁଇ ଦେଲେ, ମୁହଁ ଆଗକୁ କରି, ଖୁସିରେ ବସି, କାଖତଳକୁ କୁଣ୍ଡାଉ ଥିଲା । ଖରାବେଳେ

'ନାରୀ' ଟିକିଏ ଅଶକତ ମେଣ୍ଟାଇବାକୁ ଗଡ଼ପଡ଼ ହେବାବେଳେ, ତା ମୁଣ୍ଡରୁ ମିଛିମିଛିକା ଉକୁଣି ବାଛି ପାଟିରେ ପକାଉଥିଲା । ଏଣିକି 'ନାରୀ' କାମ କଲାବେଳେ ଗୁଣୁଗୁଣୁ ହେଇ ଗୀତ ବୋଲିବାକୁ ଆରମ୍ଭ କଲାଣି । ସେ ସ୍ୱର ଧରିବାବେଳେ 'ନୂଆ' ଏକଲୟରେ ତା ମୁହଁକୁ ଚାହିଁକି ବସେ । ଫୁରୁସତ୍‌ବେଳେ 'ନାରୀ' ତା ଛିଡ଼ା ଶାଢ଼ୀରେ 'ନୂଆ' ପାଇଁ ଛୋଟଛୋଟ ଜାମା ତିଆରି କରିଦେଇଛି । 'ନୂଆ'କୁ ପୋଷାକ ପିନ୍ଧାଇଦେଲେ, ସେ ତା ଦୁଇଗୋଡ଼କୁ ଜାବୁଡ଼ିଧରି ତା ମୁଣ୍ଡ ଗଡ଼ାଏ । ସେ ବି ପୋଷାକଟା ତାକୁ କେମିତି ମାନୁଛି ଦେଖିବାକୁ, ମଝିରେ ମଝିରେ ତାକୁ ଧରିଆଣି, ପୋଷାକର କୋଚାମୋଚା ଜାଗାକୁ ଟଣାଟଣି କରି ଠିକ୍ କରିଦିଏ ଓ ତାକୁ ଏପାଖସେପାଖ କରି ଦେଖେ । 'ନାରୀ'ର ମନ ଭିତରେ ଖାଲି ପଡ଼ିଥିବା ଜାଗାରେ 'ନୂଆ'ର ମୋହ ଆପେ ଆପେ କମିକମି ଯାଉଥିଲା ।

'ପୁରୁଷ' ଓ 'ନାରୀ' ତାଙ୍କର ବେଳଗୁଡ଼ାକୁ ଯେ ଯାହା କାମରେ ଲଗାଇ ଚାଲିଥିଲେ । ସେ ଦୁହିଙ୍କର ଫାଙ୍କଟ ଆସିଯାଉଥିଲା, ଯେତେବେଳେ ସେମାନେ ଏକାଠି ହେଉଥିଲେ । 'ନୂଆ' ଆସିବାଦିନରୁ ଏକାଠି ହେବା ମୁହୂର୍ତ୍ତ ଗୁଡ଼ାକ ସେ ଦୁହିଙ୍କପାଇଁ ଟିକିଏ ହାଲ୍‌କା ହେଇ ପଡ଼ିଥିଲା । 'ସ୍ୱାମୀ' ସାହେବ ଘରକୁ ଫେରିବାପରେ 'ନୂଆ'କୁ କିଛି ସମୟ ପାଇଁ ବାହାରକୁ ବୁଲାଇ ନେଉଥିଲେ । ମାଙ୍କଡ଼ଟା ପାଇଁ ଯେ ତାଙ୍କର ସ୍ନେହଶ୍ରଦ୍ଧା ଖୁବ୍ ଥିଲା, ତା ନୁହେଁ । ହଅ, ମାଙ୍କଡ଼ଟା ଅଛିତ ଅଛି, ବାହାରକୁ କିଛି ସମୟ ବାହାରିଗଲେ, ଘରେ ଅବଶ୍ୟ ଆସିବାକୁଥିବା ଖିଚିଖିଚି, ଚିମୁଟା ଚିମୁଟି ପାଲାରୁ ଟିକିଏ ତ୍ରାହି ମିଳିବ । ତାପରେ, ମାଙ୍କଡ଼ଟାକୁ ସ୍ତ୍ରୀ ପାଖରୁ କିଛି ସମୟ ଅଲଗା ରଖିବାକୁ ତାଙ୍କର କାହିଁକି ଆଜିକାଲି ଇଚ୍ଛା ହୁଏ ?

ଦିନେ 'ନାରୀ'କୁ ଜର ହେଇଥିଲା । ସ୍ତ୍ରୀର ଦେହପା ବିଷୟରେ ସ୍ୱାମୀ ମହାଶୟ ବିଶେଷ କିଛି ଖବର ରଖନ୍ତି ନାହିଁ । ସ୍ତ୍ରୀ ବି ସବୁ ଦିନ ଭଳି କୁନ୍ଥେଇ, 'ବାପାଲୋ ମାଆଲୋ' ହେଇ ଦିହଦୁଃଖ କଥା ଜଣେଇବାକୁ କି ବଖାଣିବାକୁ ଇଚ୍ଛା କରି ନାହିଁ । ସେଦିନ ଘରେ ପହଞ୍ଚି ମାଲିକ ମହୋଦୟ ମାଙ୍କଡ଼କୁ ବୁଲିଯିବାକୁ ଇସାରା ଦେଲେ । 'ନୂଆ' କିନ୍ତୁ ତାଙ୍କ କଥା ଶୁଣି ନଶୁଣିଲା ପରି ରହିଲା । ସେ 'ନାରୀ' ଦେହକୁ ଆଉଜିକି ବସିଥିଲା । ସେବି ମାଙ୍କଡ଼ କୋଡ଼ରେ ହାତ ପକେଇକି ଆଖିବୁଜି ପଡ଼ିଥିଲା । ସ୍ୱାମୀ ମହାପ୍ରଭୂଙ୍କ ମୁଣ୍ଡକୁ ପୀତ ଉଠିଗଲା । ଅନ୍ୟଦିନେ ସେ ଡାକିଦେଲେ, ମାଙ୍କଡ଼ ଚାଲିଆସେ । ସେ ମାଙ୍କଡ଼ଟାକୁ ଟାଣିଆଣି, ତା ବେକରେ ଜଞ୍ଜିର ଲଗାଇ ଝିଙ୍କି ଝିଙ୍କି ନେଇଗଲେ । ଆଗରୁ କେବେ 'ନୂଆ' ବନ୍ଧାହେଇ ବାହାରକୁ ଯାଇନଥିଲା । ବାଟରେ ସେ ଖେଁ ଖେଁ ହେଉଥାଏ । ଟିକିଏ 'ପୁରୁଷ'ର ହାତ କୋହଳ ହେଇଯିବାରୁ 'ନୂଆ' ଟାଣିହେଇ ଖସରିଁ ଗଲା । ଆଗରେ ନଡ଼ିଆ ଗଛ ଅଧାକୁ ଚଢ଼ିଯାଇଁ, ସେଠି ଚିଟ୍ ଚିଟ୍ କରୁଥିବା ଗୁଣ୍ଡୁଚି ମୂଷାର ଲାଞ୍ଜଟାକୁ ଟାଣିଦେଇ, ତାକୁ ତଳକୁ ଗଡ଼େଇ ପକାଇଲା । ପାଖ ବାଡ଼ିକୁ କୁଦାଟେ ମାରି, ସେଠି କାନ୍ଦି ଓହୋଳିଥିବା କଦଳୀ ଗଛକୁ ଗୋଇଠାପରେ ଗୋଇଠା ଚଢ଼ାଇଦେଲା । ଗୋଟେ ଦିଟା କଦଳୀ ଚୋବାଇ ଦେଇ କାନ୍ଦିଟାକୁ ଛିଡ଼ାଛିଡ଼ି କରି ଛିନ୍‌ଛତର କରିଦେଲା । ରାସ୍ତାକୁ ଡିଆଁମାରି ସେଠି ଖେଳୁଥିବା

ଗୋଟେ ପିଲ୍ଲାର ପଛକୁ ନାତଟେ ଚଢ଼ାଇ ଦେଲା । 'ପୁରୁଷ' ଖଣ୍ଡେ ଛାଟ ଭାଙ୍ଗି ଆଣି ତାକୁ ଗୋଡ଼ାଇବାରୁ ସେ ଦୌଡ଼ି ଦୌଡ଼ି ଘରକୁ ପଳାଇଲା । ଶୋଇଥିବା 'ନାରୀ'ର ଛାତିରେ ମୁହଁମାଡ଼ି କୁଉଁ କୁଉଁ ହେଇ ଉଠିଲା ।

କିଛିଦିନ ପରେ ଥରେ । ଆକାଶରେ ଜହ୍ନ ଗୋଲହେଇ ଝୁଲୁଛି, ଗଛର କେନା ଓ ପତ୍ରର ଫାଙ୍କାରୁ ଧୋବ ଧୋବ ଜ୍ୟୋସ୍ନା ବୋହି ବୋହି ପଡୁଛି ।

'ନାରୀ' ଝରକା ଖୋଲି ଏକ ଲୟରେ ବାହାରକୁ ଚାହିଁଥିଲା । ଜହ୍ନ ଆଲୁଅର ଚକ୍ ଚକ୍ ଜରିଗୁଣ୍ଡ ତା ଉପରେ ଛିଞ୍ଚାଡ଼ି ହେଇ ପଡୁଥିଲା ।

'ନୂଆ' କୁ ତା ଛାତିର କଡ଼ଆଡ଼େ ଜାକି ଧରି ଆବେଶରେ ସେ ଜହ୍ନକୁ ଦେଖୁଥିଲା । ଜହ୍ନର ମୁହଁରୁ ହସ ସରତି ସରତି ଆସୁଥିଲା । ତା ଭିତରଟା ମିଠାମିଠା ଅନୁଭବରେ ପୋତି ହେଇ ପଡୁଥିଲା । 'ନୂଆ' ବି ଚୁପ୍‌ଚାପ୍ ବାହାରର ଗଛପତ୍ର, ଯାଡ଼େସ୍ୟାଡ଼େ, ଆଖି ବୁଲାଉ ଥିଲା । ଅନେକ ବେଳୁ ସଂଜ ଗଡ଼ି ଯାଇଁ ରାତି ଛମିଛମି ଆସିଲେ ବି 'ନାରୀ'ର ଛମ୍ପା ଖିଆଲ ନଥିଲା । ତା ଭିତରେ ଭିଡ଼ି ହେଇଥିବା ବହଳିଆ ଅନ୍ଧାର ଆସ୍ତେ ଆସ୍ତେ ପତଳା ହେଇ ଆସୁଥିଲା ।

ଯା ଭିତରେ କେତେବେଳେ ଯେ ସ୍ୱାମୀ ରାହୁଗ୍ରହ ତା ଦେହର ଜହ୍ନକୁ ଗିଳିବାକୁ ମୁହଁ ମେଲାଇଲାଣି, ସେ କଥା 'ନାରୀ'କୁ ବିଲ୍‌କୁଲ୍ ମାଲୁମ ନଥିଲା । 'ପୁରୁଷ' ଘର ଦୁଆରେ ଠିଆ ହେଇ ହେଇ 'ନୁଆ' ଓ 'ନାରୀ'କୁ ଠଅର କରୁଥିଲା । ତାଙ୍କର ଦେହ ଗୁଂଜା ଗୁଂଜି ହେଇ ବସିବା ଦୃଶ୍ୟକୁ ସେ କେମିତି ବରଦାସ୍ତ କରି ପାରୁନଥିଲା । ଆଖି ତା'ର ରଙ୍ଗ ଧରି ଯାଉଥିଲା । ଅନେକ ଦିନରୁ ମନରେ ପଡ଼ିଯାଇଥିବା ଭାଙ୍ଗ ଫିଟି ଫିଟି ଯାଉଥିଲା । ଦେହ ନିଶାର ପ୍ରଚଣ୍ଡ ଜୋସ୍ ନେଇ ସେ ଦୌଡ଼ିଯାଇ ମାଙ୍କଡ଼ଟାକୁ ଝିଙ୍କି ଆଣି କବାଟ ସେ ପାଖରେ କଚାଡ଼ି ଦେଲା । ତା' ପରେ ରାକ୍ଷସର ଭୋକ ନେଇ ସ୍ତ୍ରୀକୁ ମାଡ଼ିବସିଲା । 'ନାରୀ' ନିଜକୁ ତା କବଳରୁ ମୁକୁଳାଇବାକୁ ପ୍ରାଣପଣେ ପିଟିଛାଟି ହେଉଥିଲା ।

ହଠାତ୍ ବୀର ଦର୍ପରେ ମାଙ୍କଡ଼ଟା ଛୁଟିଆସି 'ପୁରୁଷ' ଉପରକୁ ଝାମ୍ପ ମାରିଲା । ନଖରେ ରାମ୍ପି କାମ୍ପି, ଦାନ୍ତରେ କାମୁଡ଼ିମାମୁଡ଼ି ସେ ତାକୁ ତଳକୁ ଗଡ଼ାଇ ପକାଇ, ତା ଉପରେ ଚଢ଼ି ବସିଲା ।

'ନାରୀ' ଆଖିର ଡୋଳାକୁ ଅଟକାଇ 'ନୂଆ'କୁ ଦେଖୁଥିଲା । ଦେହରୁ ଖସିଖାସି ଯାଇଥିବା ଖେଳାମେଳା ଲୁଗାପଟା, ଅଲରା ମଲରା ବାଳକୁ ସଜାଡ଼ିବାକୁ ସେ ଭୁଲିଯାଇ ଖୋଲା ଦେହରେ 'ନୂଆ'କୁ ଦେଖି ଚାଲିଥିଲା ।

ସେ ଚାହାଣିରେ କଣ ( ? ) ଓ କାହିଁକି ( ? )ର କି ଉତ୍ତର କେତେ ଥିଲା, ସେ ଜାଣେ । ଆଁଖିରେ ତାର କିନ୍ତୁ ଲୁହ ବିନ୍ଦୁଟାଏ ଜକେଇ ଆସୁଥିବା ସ୍ପଷ୍ଟ ଜଣା ଯାଉଥିଲା ।

●●●



ଓଡ଼ିଆ ଗଳ୍ପ ଜଗତରେ ଜଣେ ମାନବବାଦୀ, ଦରଦୀ କଥାଶିଳ୍ପୀର ପ୍ରସିଦ୍ଧି ଧରି ଅଚ୍ୟୁତାନନ୍ଦ ପତି ଏକ ବହୁ ଚର୍ଚ୍ଚିତ ବ୍ୟକ୍ତିତ୍ୱ । ଓଡ଼ିଆ ଗଳ୍ପକୁ ଭିନ୍ନ ଏକ ଉଚ୍ଚତା ଦେଇ ସେ ନିଜକୁ ଜଣେ ସ୍ୱତନ୍ତ୍ର ସ୍ରଷ୍ଟା ରୂପେ ପ୍ରତିଷ୍ଠିତ କରି ପାରିଛନ୍ତି । ମୁଖ୍ୟତଃ ଦୁନିଆ ଦରବାରର ବିଚାରବିଭ୍ରାଟରେ ବିକ୍ଷତ ହେଉଥିବା ଦୁଃସ୍ଥ-ଦୀନ-ଦଳିତ, ହୀନ-ହେୟ-ନ୍ୟୂନ ମଣିଷର ଆତ୍ମାର ଆକୁତି, ତା'ର ଅନ୍ତରର ଧ୍ୱନ୍ୟାତ୍ମକ ବିଭୂତିକୁ ବିଭାସିତ କରି ତାକୁ ମାନବୀୟ ସମ୍ମାନ ଦେବାର ପୁଣ୍ୟପ୍ରୟାସ ହିଁ ଶ୍ରୀପତିଙ୍କ ଗଳ୍ପର କଥାବୃତ୍ତ । ଅଧିକନ୍ତୁ, ତାଙ୍କ ଭାଷାର ଭଙ୍ଗୀ, ତାଙ୍କ ଶୈଳୀର କାବ୍ୟିକ ସୌକୁମାର୍ଯ୍ୟ, ତାଙ୍କ କଥନିକତାରେ ଶାଣିତ ବ୍ୟଙ୍ଗ ଓ ତିର୍ଯ୍ୟକ ଲାଳିକା, ତାଙ୍କ ଚିନ୍ତନରେ ସଂଯମ, ସଂସ୍ଥିରତା ଏବଂ ନାନ୍ଦନିକତା, ତାଙ୍କର ସୃଷ୍ଟିରେ ଅହରହ ସ୍ରବୁଥିବା ଦରଦ ଓ ସମ୍ବେଦନ, ଜୀବନର ପତମାନ, ପଳିତ ପ୍ରବୃତ୍ତିକୁ ଉତ୍ତରଣ ଓ ଉତ୍କ୍ରମଣର ସ୍ପର୍ଶ ଦେଇ ଜୀବନକୁ ସଂଶୋଧନ କରିବାର ଶୁଭଦର୍ଶୀ ସକ୍ଷମତା, ପାଠକଙ୍କ ଆଗରେ ତାଙ୍କୁ ଅନନ୍ୟ କରି ରଖିଛି ।

ଏ ସଂକଳନରେ ଶ୍ରୀ ପତିଙ୍କ ମାନବେତର ଚରିତ୍ର ଉପରେ ଲିଖିତ କେତେକ ଗଳ୍ପକୁ ଏକତ୍ରିତ କରି ପ୍ରକାଶ କରାଯାଇଛି । ବହୁ ଗଳ୍ପରେ ଶ୍ରୀପତି ମାନବର ଗୁଣସତ୍ତାର ଆନୁଭୂମିକ ରେଖାରେ ସେମାନଙ୍କୁ ଠିଆ କରେଇଛନ୍ତି । କେଉଁଠି ସେମାନେ ପ୍ରତୀକର ପରିଚ୍ଛଦ ପିନ୍ଧି ଶୋଷିତ ମଣିଷର ମୂର୍ତ୍ତ ପ୍ରତିବାଦ ତ କେଉଁଠି ମଣିଷର ସ୍ନେହ, ପ୍ରେମ, ପ୍ରୀତିପ୍ରଣୟ, ବିରହବିଚ୍ଛେଦର ବିଗ୍ରହ ରୂପେ ବିଦ୍ୟମାନ । ଶ୍ରୀ ପତି ମଣିଷ ପାଇଁ ମଣିଷ ସ୍ୱରରେ ଯେଉଁଠି ନିଜ ବକ୍ତବ୍ୟକୁ କହି ପାରିନାହାନ୍ତି, ପ୍ରାଣୀ ପ୍ରରୂପ ଜରିଆରେ ତାକୁ ଉଦ୍‌ଘୋଷଣ କରିଛନ୍ତି ।

ଅନୁଭବର ଅନନ୍ୟକାଣ୍ଡାରୀ ଶ୍ରୀ ପତିଙ୍କ ଲେଖନୀର ଆଲେଖ୍ୟ ଧରି ପ୍ରକାଶ ପାଇଛି, ସ୍ୱତନ୍ତ୍ର ସ୍ୱାଦର ଏ ଗଳ୍ପ ସଂକଳନ । ମୋର ଯଥେଷ୍ଟ ବିଶ୍ୱାସ ରହିଛି, ଏ ସଂକଳନଟି ପାଠକ ମହଲରେ ନିଶ୍ଚୟ ଆଦୃତ ହେବ ।